# ମାଫିଆମାଳିନୀ

# ରକ୍ତାମ୍ବୁ ଚିଲିକା




ମାନବିକ ଅଧିକାର ସଂଗଠନ (ମାସ୍)
୨୧୨୩, ଶବର ସାହି ଲେନ୍, ଭୁବନେଶ୍ୱର-୬
ଫୋନ୍ ନଂ : ୪୦୪୮୪୧

# ରକ୍ତାକ୍ତ ଚିଲିକା

୧୯୯୯ ମସିହା ମେ ମାସ ୨୯ ତାରିଖ ଶନିବାର ଦିନ ଖୋର୍ଦ୍ଧା ଜିଲ୍ଲାର ଚିଲିକା କୂଳ ସୋରଣ ଗାଁରେ ରାତିଅଧିଆ ଅନ୍ଧାର ଭିତରେ ନିଘୋଡ ନିଦରେ ଶୋଇପଡିଥିବା ସାଧାରଣ ମତ୍ସ୍ୟଜୀବୀଙ୍କ ଉପରେ ଚିଙ୍ଗୁଡି ମାଫିଆ ଏବଂ ପୋଲିସର ମିଳିତ ପୈଶାଚିକ ଆକ୍ରମଣ ଏବଂ ଗୁଳି ଚାଳନାରେ ଚାରିଚାରିଟା ନୀରିହ ଖଟିଖିଆ ଜୀଅନ୍ତା ମତ୍ସ୍ୟଜୀବୀ ଚାହୁଁ ଚାହୁଁ ଶବ ପାଲଟି ଶହୀଦ ହୋଇଗଲେ । ଆହୁରି କେତେକ ଖଣ୍ଡିଆଖାବରା ହୋଇ ଅକର୍ମଣ୍ୟ ହୋଇଗଲେ । ଏ ଅନ୍ଧାଦୁନିଆ ହିଟ୍‌ଲରୀ ଆକ୍ରମଣ ବର୍ବରୋଚିତ ଜାଲିଓ୍ଵାନାଓ୍ଵାଲାବାଗ ଗଣହତ୍ୟାକୁ ବି ବଳିଗଲା । ମତ୍ସ୍ୟଜୀବୀମାନଙ୍କ ରକ୍ତରେ 'ନୀଳାମ୍ବୁ ଚିଲିକା' ରକ୍ତାମ୍ବୁ ପାଲଟିଲା । ଗୋଟିଏ ଗଣତାନ୍ତ୍ରିକ ରାଷ୍ଟ୍ରରେ ସାଧାରଣ ଜନତାର, ଶାସନ କଳ ହାତରେ ନିଜ ଜୀବନର ସୁରକ୍ଷାକୁ ନେଇ ଥିବା ମୋହ ପୁଣିଥରେ ଦୋହଲିଗଲା । ଲୁଣ୍ଠିତ, ଆତଙ୍କିତ ଚିଲିକାର ଇତିହାସରେ ଆଉଗୋଟେ ରକ୍ତରଞ୍ଜିତ ଅଧ୍ୟାୟ ଯୋଡାଗଲା । ପୁଣିଥରେ ଚିଲିକାର ନୀଳ ଜଳ ରକ୍ତରେ ଲାଲ ହେଲା । ଦିନେ ଦର୍ଶକର ମନମୋହନକାରିଣୀ '' ମରାଳମାଳିନୀ ନୀଳାମ୍ବୁ ଚିଲିକା'' ଏବେ ''ମାଫିଆ ମାଳିନୀ ରକ୍ତାମ୍ବୁ ଚିଲିକା'' ପାଲଟିବା ପଛରେ ପ୍ରାୟ ଦୀର୍ଘ ୧୫ ବର୍ଷର ଇତିହାସ ରହିଛି । ପ୍ରଶାସନ ଏବଂ ମାଫିଆଙ୍କ ସଲାସୂତ୍ରରାରେ ସଂଗଠିତ ଏ ନୃଶଂସ ଗଣହତ୍ୟା ପରିପ୍ରେକ୍ଷୀରେ ସେ ଅଶାନ୍ତ, କ୍ଷତାକ୍ତ ଇତିହାସର ଫର୍ଦ୍ଦ ଖୋଲିବା ଜରୁରୀ ହୋଇ ପଡ଼ିଛି ।

## ଚିଲିକାରେ ମାଫିଆ ରାଜର ଅୟମାରମ୍ଭ

ବଙ୍ଗୋପସାଗରର ସଂଲଗ୍ନ ଓଡ଼ିଶା ଉପକୂଳରେ ଅବସ୍ଥିତ ଏସିଆ ମହାଦେଶର ସର୍ବବୃହତ୍ ଲବଣାକ୍ତ ହ୍ରଦ ଚିଲିକା, ଓଡ଼ିଶା ପ୍ରାକୃତିକ ଶୋଭା ସମ୍ଭର୍ଦ୍ଦର ସୁନା ମୁକୁଟ । ଦୂର ଦିଗ୍‌ବଳୟରୁ ପ୍ରାକୃତିକ ପଟ୍ଟଚିତ୍ରଟିଏ ଝୁଲି ରହିଥିବା ପରି ଦେଖାଯାଉଥିବା ଏହି ୧୧୦୦ ବର୍ଗକିଲୋମିଟର ପରିମିତ ନୀଳ ଜଳରାଶି ଲକ୍ଷ ଲକ୍ଷ ପ୍ରକୃତିପ୍ରେମୀ ପର୍ଯ୍ୟଟକଙ୍କ ପାଇଁ ଯେତିକି ଆନନ୍ଦ, ଉଲ୍ଲାସ ଓ ଆବେଗର ମାନସିକ ଖୋରାକ ଯୋଗେଇ ଆସିଛି ତା' ଅପେକ୍ଷା ବହୁ ପରିମାଣରେ, ତା' ଭିତରେ ଏବଂ ଚାରିପାଖରେ ବାସକରି ରହୁଥିବା ଲକ୍ଷ ଲକ୍ଷ ମତ୍ସ୍ୟଜୀବୀ ପରିବାରର ପେଟର ଭୋକ ମେଣ୍ଟାଇବାକୁ ଖୋରାକ୍ ଯୋଗାଇବାର ମୁଖ୍ୟ ଆଧାର ହୋଇ ରହି ଆସିଛି । ବିଭିନ୍ନ ଉପାୟରେ ଚିଲିକାରୁ ମାଛମାରି ଏହି କୌଳିକ ମତ୍ସ୍ୟଜୀବୀମାନେ କୌଣସିମତେ ନିଜପାଇଁ ଦାନାକନା ଯୋଗାଡ କରିଥାଆନ୍ତି । ଆବହମାନ କାଳରୁ ଏଇ ଅସଂଗଠିତ, ଦରିଦ୍ର ଓ ଦଳିତ ମତ୍ସ୍ୟଜୀବୀମାନଙ୍କର ପରିଶ୍ରମର ଫଳକୁ ଦଲାଲ୍ ମାଛ ବ୍ୟବସାୟୀମାନେ ଶୋଷଣ କରି ମୁନାଫା ଉଠେଇଛନ୍ତି । କିନ୍ତୁ ଅଶୀଦଶକର ମଧ୍ୟଭାଗରେ ଚିଲିକାରେ ବାଗଦା ଚିଙ୍ଗୁଡିର ସଘନ ଚାଷ ଆରମ୍ଭ ହେବାପରେ ମତ୍ସ୍ୟଜୀବୀମାନଙ୍କର ଜୀବନ ଜୀବିକା ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇଗଲା । ଚିଙ୍ଗୁଡି ଚାଷୀ ମାଫିଆମାନଙ୍କ ପାଇଁ ଚିଲିକା ସେଇଦିନଠାରୁ ରାତିକେ ହାତୀଏ କମେଇବାର ସୁନା ଅଣ୍ଡାଦିଆ କୁକୁଡ଼ା ପାଲଟିଗଲା । ଦେଶ ବାହାରକୁ ଚିଲିକା ଚିଙ୍ଗୁଡି ରପ୍ତାନୀ କରି ଡଲାର ଦେବୀଙ୍କୁ ଆବାହନ କରିବାକୁ ମାଫିଆମାନେ ସାଧାରଣ ମତ୍ସ୍ୟଜୀବୀମାନଙ୍କୁ ନରବଳି ଦେଲେ । ଅଥଚ, ଦେଶପାଇଁ ବିଦେଶୀ ମୁଦ୍ରା ଉପାର୍ଜନ କରୁଛନ୍ତି ବୋଲି ସରକାରୀ ସୁନାପୁଅ ହୋଇ ବାହାବା ପାଇଲେ । ରାଜ୍ୟର ବରିଷ୍ଠ ପୋଲିସ୍ ଅଫିସର, ପ୍ରଶାସକ, ମନ୍ତ୍ରୀ, ରାଜନୈତିକ୍ ନେତାଙ୍କ ପ୍ରତ୍ୟକ୍ଷ ପୃଷ୍ଠପୋଷକତାରେ ଚିଙ୍ଗୁଡି ମାଫିଆମାନେ ଆସ୍ତେ ଆସ୍ତେ ଚିଲିକାରେ ମାତିଗଲେ ।

ସବୁ ଆଇନ୍ କାନୁନ୍ ଉର୍ଦ୍ଧ୍ୱରେ ଗୁଣ୍ଡାମୀ, ବାହୁବଳ ଏବଂ ଅର୍ଥବଳରେ ଚିଲିକାକୁ ନିଜ ଅକ୍ତିଆରରେ ରଖି ସଘନ ଚିଙ୍ଗୁଡି ଚାଷ ଦ୍ୱାରା ଚିଲିକାର ପରିବେଶ ଓ ଅନ୍ୟାନ୍ୟ ମାଛ ଉତ୍ପାଦନର ଉପରକୁ ସେମାନେ ଏଭଳି ଧ୍ୱଂସ କରି ଆସିଛନ୍ତି ଯେ ସାଧାରଣ ମତ୍ସ୍ୟଜୀବୀମାଙ୍କର ଚିଲିକାରୁ ମାଛମାରି ଚଳିବା ପାଇଁ ଆଉ କୌଣସି ସୁଯୋଗ ନାହିଁ । ବୋମା, ବନ୍ଧୁକ ଏବଂ ବାହୁବଳ ଏବେ ଚିଲିକାର ପ୍ରକୃତ ଭାଗ୍ୟ ନିୟନ୍ତା ।

ସ୍ୱତନ୍ତ୍ର ଭୌଗୋଳିକ ପରିସ୍ଥିତି ଏବଂ ଜଳର ସ୍ୱଳ୍ପ ଲବଣତା ଯୋଗୁ ବାଗଦା ଚିଙ୍ଗୁଡି ଚାଷ ପାଇଁ ଚିଲିକା ଅତ୍ୟନ୍ତ ଉପଯୋଗୀ ଏବଂ ଚିଲିକା ଚିଙ୍ଗୁଡିର ବିଶ୍ୱ ବଜାରରେ ଖୁବ୍ ଚାହିଦା ରହିଛି । ଚିଲିକା ଅଞ୍ଚଳର କିଛି ସଚେତନ ମତ୍ସ୍ୟଜୀବୀଙ୍କର କହିବାନୁଯାୟୀ ପ୍ରଥମେ ଚିଲିକାରେ ଚିଙ୍ଗୁଡିଚାଷ ନହୋଇ କେବଳ ପ୍ରାକୃତିକ ଉପାୟରେ ବଢୁଥିବା ଚିଙ୍ଗୁଡିକୁ ଧରି ରପ୍ତାନୀ କରାଯାଉଥିଲା । ଏହିଭଳି ଏକ ଚିଙ୍ଗୁଡି ରପ୍ତାନୀ କମ୍ପାନୀରେ କାମକରୁଥିବା ଜଣେ ଅଫିସର ୧୯୮୭-୮୮ ବେଳକୁ ଚିଲିକାରେ ପ୍ରଥମେ ଚିଙ୍ଗୁଡି ଚାଷ କରି ପ୍ରଚୁର ଲାଭ କଲାପରେ, ଅନ୍ୟ ପଇସା ବାଲା ଲୋକେ ଚିଙ୍ଗୁଡି ଚାଷ ଆରମ୍ଭ କଲେ ।

ଅନ୍ୟ କେତେକେ ସରକାରୀ ଅଫିସରଙ୍କ କହିବାନୁଯାୟୀ ସପ୍ତମ ଯୋଜନା କାଳରେ ଆରମ୍ଭ କରାଯାଇଥିବା ଇ.ଆର୍.ଆର୍.ପି. ସ୍କିମ୍ ପ୍ରଥମେ ଓଡ଼ିଶାରେ କାର୍ଯ୍ୟକାରୀ କରାଯାଇଥିଲା । ସେଇ ଯୋଜନାରେ ୧୯୮୪-୮୫ ମସିହା ବେଳକୁ ଚିଲିକା ଉପକୂଳବର୍ତ୍ତୀ ଗରିବ ମତ୍ସ୍ୟଜୀବୀମାନଙ୍କର ଅର୍ଥନୈତିକ ଥଇଥାନ ପାଇଁ ଚିଲିକା କୂଳରେ ୨୫,୩୦୦ ଏକର ଜମି ଚିହ୍ନଟ କରାଯାଇ ସେଥିରୁ ମାତ୍ର ୩୦୦ ଏକର ଜମି ଗରିବ ଲୋକମାନଙ୍କୁ ଦିଆଯାଇ ଚିଙ୍ଗୁଡିଚାଷ କରାଯାଇଥିଲା । ଏଗୁଡିକ କେବଳ ବର୍ଷାଦିନରେ ଚିଲିକାଜଳ ଫୁଲିଉଠି ମାଡ଼ି ଯାଉଥିବା ପତିତ ଜମି । ଏଇ ଚିଙ୍ଗୁଡି ଚାଷର ଜଳ ଚିଲିକା ସହିତ ମିଶିବାକୁ ଦିଆଯାଉ ନଥିବାରୁ ଏହା ପ୍ରଦୂଷଣ ସୃଷ୍ଟିକରୁନଥିଲା । କିନ୍ତୁ ଏଇ କାର୍ଯ୍ୟକ୍ରମରେ ଚିଲିକାର ଚିଙ୍ଗୁଡି ଚାଷ ଖୁବ୍ ଲାଭଜନକ ହେବାରୁ ଆସ୍ତେ ଆସ୍ତେ ଅନ୍ୟମାନେ ମଧ୍ୟ ଚିଲିକାରେ ବ୍ୟାପକ ଚିଙ୍ଗୁଡିଚାଷ ଆରମ୍ଭ କଲେ ଏବଂ ତା'ର ସୁଯୋଗ ନେଇ ମାଫିଆମାନେ ଚିଲିକାରେ ପଶିଲେ ।

ତେବେ ଯାହାହେଉ, ଅବସ୍ଥା ଏପରି ସ୍ତରରେ ଆସି ପହଞ୍ଚିଲା ଯେ, ଚିଙ୍ଗୁଡି ଚାଷୀମାନଙ୍କ ଦୌରାତ୍ମ୍ୟରେ ମତ୍ସ୍ୟଜୀବୀମାନେ ଅତିଷ୍ଠ ହୋଇ ପୁରୀ ଜିଲ୍ଲା ପ୍ରଶାସନର ଜଣେ ପଦସ୍ଥ ପୋଲିସ ଅଫିସରଙ୍କୁ ଅନୁରୋଧ କଲେ ଏହି ମାଫିଆଙ୍କୁ ହଟେଇବା ପାଇଁ । ଉକ୍ତ ପୋଲିସ୍ ଅଫିସର ମାଫିଆମାନଙ୍କୁ ହଟେଇବାକୁ ଯାଇ ଦେଖିଲେ ଯେ, ନିଜେ ସେ ଚିଲିକାରେ ଚିଙ୍ଗୁଡି ଚାଷ କରି ରାତିକେ ହାତୀଏ ଆଣିପାରିବେ । କୁହାଯାଏ ଆଜି ସେଇ ବରିଷ୍ଠ ପୋଲିସ୍ ଅଫିସର ଜଣକ ରାଜ୍ୟ ସରକାରରେ ଉଚ୍ଚ ପଦବୀରେ ରହିବା ସହ ଚିଲିକାରେ ଜଣେ ପ୍ରମୁଖ ବେନାମୀ ଚିଙ୍ଗୁଡି ମାଫିଆ ।

୧୯୫୯ ମସିହାରୁ ଚିଲିକାର ମତ୍ସ୍ୟଜୀବୀମାନଙ୍କୁ ନେଇ ଅନେକ ଗୁଡିଏ ପ୍ରାଥମିକ ମତ୍ସ୍ୟଜୀବୀ ସମବାୟ ସମିତି ଗଠନ କରାଯାଇ ସେଗୁଡିକ ଏକ କେନ୍ଦ୍ରୀୟ ସମବାୟ ସମିତି ଅଧୀନରେ ରାଖାଯାଇଥିଲା । ଏଇ ସମବାୟ ସମିତି ମାନଙ୍କ ଜରିଆରେ ଚିଲିକାର ମାଛଧରା ଉସ ବା ସଇରାତ୍ ଗୁଡିକୁ ମତ୍ସ୍ୟଜୀବୀମାନଙ୍କୁ ଲିଜ୍ ସୂତ୍ରରେ ଦିଆଯାଏ । ସମୟାନୁକ୍ରମେ ଚିଙ୍ଗୁଡି ମାଫିଆମାନେ ମତ୍ସ୍ୟଜୀବୀମାନଙ୍କୁ ପ୍ରଲୋଭିତ କରି ସେମାନଙ୍କର ଲିଜ୍ ଜାଗାଗୁଡିକୁ ସବ୍‌ଲିଜ୍‌ରେ ନେଇ ଚିଙ୍ଗୁଡି ଚାଷ

ଆରମ୍ଭ କଲେ । ତା' ପୂର୍ବରୁ ସେମାନେ ଷଡଯନ୍ତ୍ରକରି ମତ୍ସ୍ୟଜୀବୀମାନଙ୍କର ସମବାୟ ସମିତି ଗୁଡିକୁ ଅଚଳ, ଦୁର୍ବଳ କରିଦେଇଥିଲେ, ଯାହାଫଳରେ କି ବଞ୍ଚିବା ପାଇଁ ମତ୍ସ୍ୟଜୀବୀମାନେ ସେମାନଙ୍କର ଲିଜ୍ ଗୁଡିକୁ ମାଫିଆମାନଙ୍କୁ ସବ୍-ଲିଜ୍ ଦେବାକୁ ବାଧ ହୋଇଥିଲେ । ଅବଶ୍ୟ ଏଥିରେ ଯେ ମୋଟେ ଆଶୁ ମୁନାଫାର ଲକ୍ଷ୍ୟ ନଥିଲା ତାହା କହିହେବ ନାହିଁ । ଚିଙ୍ଗୁଡି ଚାଷର ମୁନାଫାରେ ପ୍ରଲୋଭିତ ହୋଇ କେତେକ ପ୍ରଭାବଶାଳୀ ଅଣ-ମତ୍ସ୍ୟଜୀବୀ ମଧ ଜୋରଜବରଦସ୍ତ ଚିଲିକାକୁ ଦଖଲ କରି ଚିଙ୍ଗୁଡି ଚାଷ ଆରମ୍ଭ କରିଦେଲେ । ଆସ୍ତେ ଆସ୍ତେ ମତ୍ସ୍ୟଜୀବୀ ସମବାୟ ସମିତି ଗୁଡ଼ିକ ଦୁର୍ବଳ ହୋଇପଡିବାରୁ ନିଜ ଜୀବିକା ଚଳେଇ ରଖିବା ପାଇଁ ଅର୍ଥ ଯୋଗାଡ କରିବାକୁ ମତ୍ସ୍ୟଜୀବୀମାନେ ସୁଧଖୋର ମହାଜନମାନଙ୍କ ଉପରେ ନିର୍ଭରଶୀଳ ହେଲେ । ଅତି ଉଚ୍ଚ ହାର ସୁଧରେ ଋଣ ଆଣି ଶୁଝି ନପାରିଲେ ସେ ବାବଦକୁ ମହାଜନମାନେ ଅଧିକାଂଶ ସ୍ଥଳରେ ମତ୍ସ୍ୟଜୀବୀମାନଙ୍କ ଲିଜ୍ ଜାଗାକୁ ଜବରଦସ୍ତ ମାଡିବସି କିମ୍ବା ସବ୍ ଲିଜ ସୂତ୍ରରେ ନେଇ ଚିଙ୍ଗୁଡି ଚାଷ ଆରମ୍ଭ କଲେ । ମାଫିଆମାନେ ଚିଲିକାକୁ ପ୍ରଥମେ ପଶିବାର ଏସବୁ ଥିଲା ମୁଖ୍ୟ ମାଧମ । ଚିଙ୍ଗୁଡି ଚାଷରୁ ହେଉଥିବା ଆକାଶଛୁଆଁ ମୁନାଫାର ମଜା ଚାଖିବା ପରେ ମାଫିଆମାନେ କାଳକ୍ରମେ ବାହୁବଳରେ ଏବଂ ସରକାରୀ କଳକୁ ଲାଞ୍ଚବଳରେ ପ୍ରଭାବିତ କରି ବେଆଇନ୍ ଭାବେ ଚିଲିକାର ଜାଗା ଅଜାଗା ସବୁଆଡେ ମାଡି ଗଲେ । ଏବେ ସମ୍ପୂର୍ଣ୍ଣ ଚିଲିକା ସେମାନଙ୍କ କବଳରେ । ତା'ଛଡା ଅଧିକାଂଶ ସମୟରେ ଚିଲିକାର ମତ୍ସ୍ୟଜୀବୀ ଏବଂ ଅଣ ମତ୍ସ୍ୟଜୀବୀମାନଙ୍କ ମଧରେ ବିବାଦ ମେଣ୍ଟାଇବା ଆଳରେ, ପିଠା ପାଇଁ ବିଲେଇ କଳିରେ ମାଙ୍କଡ ପଶିଲା ଭଳି ଏଇ ମାଫିଆ-ମାଙ୍କଡମାନେ ଚିଲିକାରେ ଆସ୍ଥାନ ଜମେଇବାର ସୁଯୋଗ ପାଇଛନ୍ତି ।

## ୧୯୯୧ ମସିହା ସରକାରୀ ଲିଜ୍‌ନୀତି :
## ଚିଲିକାର ଆଇନସିଦ୍ଧ ଧର୍ଷଣର ଅୟମାରମ୍ଭ

ଅଶୀ ଦଶକର ଶେଷ ଭାଗ ପର୍ଯ୍ୟନ୍ତ ଚିଲିକାରେ ଜୋର୍ ଜବରଦସ୍ତ ଚିଙ୍ଗୁଡିଚାଷ ବେନାମୀ ଏବଂ ବେଆଇନ ଭାବରେ ଚାଲିଥିଲା । ସେତେବେଳେ ଜବରଦସ୍ତ ଆସ୍ତେ ଆସ୍ତେ ମାଛଧରା ଜାଗା ( Capture Sources) ମାନଙ୍କୁ ମାଛଚାଷ ଜାଗା (Culture Source) ରେ ପରିଣତ କରିଦିଆଯିବାରେ ଲାଗିଲା ଏବଂ ତା' ଫଳରେ ମତ୍ସ୍ୟଜୀବୀମାନଙ୍କର ମାଛଧରା ଜାଗାଗୁଡିକ ସୀମିତ ହୋଇ ଆସିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଚିଲିକାରେ ପୂର୍ବରୁ କୌଣସି ସମୟରେ ମାଛ ଚାଷ କରାଯାଉ ନଥିଲା ।ଚିଲିକାକୁ ଦୁହାଁଳ ଗାଈ ଭାବରେ ଦେଖି ସେଥିରୁ ଅଧିକ ଡଲାର ଆୟ କରିବାର ଲକ୍ଷ୍ୟରଖି ୩୧.୧୨.୯୧ ତାରିଖ ଦିନରୁ ଓଡ଼ିଶା ସରକାର ଚିଲିକାର ଯେଉଁ ଲିଜ୍ ନୀତି ପ୍ରଣୟନ କଲେ ତାହାହିଁ ଚିଲିକାର ମରଣ ସଙ୍ଗୀତ ବୋଲି ସିଦ୍ଧ ହେଲା । ୧୯୯୦ ମସିହା ବେଳକୁ ଅଧିକ ସମ୍ବଳ ସଂଗ୍ରହ ପାଇଁ ଓଡ଼ିଶା ସରକାର ଏକ କ୍ୟାବିନେଟ୍ ସବକମିଟି ଗଠନ କରିଥିଲେ । ତତ୍କାଳୀନ ପୁରୀ କଲେକ୍ଟର ଚିଲିକାରେ ଚିଙ୍ଗୁଡି ଚାଷଦ୍ୱାରା ବହୁ ପରିମାଣରେ ଡଲାର ଆୟ କରିହେବ ବୋଲି ସେଇ କମିଟିକୁ ପରାମର୍ଶ ଦେଇଥିଲେ । ତାହାରି ପରିଣତି ହେଲା ୩୧.୧୨.୯୧ ତାରିଖରେ ଘୋଷିତ ସରକାରଙ୍କ ନୂତନ ଚିଲିକା ଲିଜ୍ ନୀତି, ଯାହାକି ଚିଲିକାରେ ମାଛ ଚାଷ ( Culture ) କୁ ଆଇନ୍ ସିଦ୍ଧ କରିଦେଲା ଏବଂ ଏହାଦ୍ୱାରା ସରକାର ଚିଲିକାର ୪୦ ଭାଗ ଜାଗାକୁ ମାଛଚାଷ ଜାଗାରେ ପରିଣତ କରିଦେଲେ । ଏହା ଫଳରେ ଚିଲିକାରେ ସଘନ ଚିଙ୍ଗୁଡି ଚାଷକୁ ଆଇନ୍‌ଗତ ସ୍ୱୀକୃତି ମିଳିଗଲା । ଦିନକୁ ଦିନ ମାଫିଆମାନେ ଏହାର ସୁଯୋଗ ନେଇ ମନଇଛା ଚିଲିକାରେ ଅଧିକରୁ ଅଧିକ ଜାଗା ମାଡ଼ିବସିବାରେ ଲାଗିଲେ ।

୩୧.୧୨.୯୧ ତାରିଖ ସରକାରୀ ଚିଲିକା ଲିଜ୍ ନୀତିର ଅନ୍ୟ ଏକ ବିଶେଷତ୍ୱ ହେଲା ଯେ, ଏଥିରେ ପ୍ରଥମ ଥର ପାଇଁ ଅଣମତ୍ସ୍ୟଜୀବୀମାନଙ୍କୁ ଆନୁଷ୍ଠାନିକ ଭାବରେ ଚିଲିକାରେ ମାଛଚାଷ ଜାଗାଗୁଡିକୁ ଲିଜ୍ ପାଇବାର ଅଧିକାର ଦିଆଗଲା, ଯଦିଓ ପୂର୍ବରୁ ଚିଲିକା ଉପରେ କେବଳ ମତ୍ସ୍ୟଜୀବୀମାନଙ୍କର ପାରମ୍ପରିକ ଏବଂ ମୌଳିକ ଅଧିକାର ରହିଥିଲା ।

ସାଧାରଣତଃ, ଅଣମତ୍ସ୍ୟଜୀବୀମାନେ ମାଛ ଧରିବାକୁ ଏକ ନୀଚ ବୃତ୍ତି ବୋଲି ଭାବିଥାଆନ୍ତି । ତେଣୁ, ସେମାନେ ମାଛଚାଷକୁ ଅଧିକ ପସନ୍ଦ କରିବା ସ୍ୱାଭାବିକ । ଚିଲିକାରେ ଚିଙ୍ଗୁଡିଚାଷରୁ ଆକାଶଛୁଆଁ ମୁନାଫାରେ ପ୍ରଲୋଭିତ ହୋଇ ଅଣମତ୍ସ୍ୟଜୀବୀ ମାନଙ୍କ ତରଫରୁ ଚିଲିକାରେ ମାଛ ଚାଷ କରିବାକୁ ସେମାନଙ୍କୁ ଅଧିକାର ଦେବାକୁ ବହୁଦିନରୁ ସରକାରଙ୍କ ଉପରେ ପ୍ରବଳ ଚାପ ପ୍ରୟୋଗ କରାଯାଉଥିଲା । ଡଲାରର ମୋହ ସାଙ୍ଗକୁ ଅଣମତ୍ସ୍ୟଜୀବୀମାନଙ୍କର ଏପରି ଚାପ ଓଡ଼ିଶା ସରକାରଙ୍କୁ ଚିଲିକାରେ ମାଛଚାଷ ଆରମ୍ଭ କରିବାକୁ ଏଇ ନୀତି ପ୍ରଣୟନ କରିବାକୁ ବାଟ ଦେଖାଇ ପାରିଥାଏ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ଅଣମତ୍ସ୍ୟଜୀବୀମାନଙ୍କର ଏଇ ଚାପକୁ ଯଦିଓ ବହୁ ଦିନରୁ ସରକାର ଏଡେଇ ଆସୁଥିଲେ, ଡଲାର ମୋହରେ ଏଥର କିନ୍ତୁ ମୁଣ୍ଡ ନୁଏଁଇଥିବା ଭଳି ମନେହୁଏ । ଆଉ ଚିଲିକାର ଏଇ ମାଛ ଚାଷ (Culture Fishery) ର ସରକାରୀ ସ୍ୱୀକୃତି ହିଁ ଚିଲିକାର ସମୂଳ ଧ୍ୱଂସ ପାଇଁ ବାଟ ଫିଟେଇ ଦେଲା ।

## ଡଲାର ନିଶାରୁ ଚିଲିକା ରକ୍ତାକ୍ତ

ଚିଲିକାର ଏଇ ଦୁର୍ଦ୍ଦଶାକୁ ଏବେକାର ''ଉଦାର ଅର୍ଥନୀତି''ର ମୋହଠାରୁ ଅଲଗା କରି ଦେଖିହେବ ନାହିଁ । ବିଶ୍ୱବଣିକମାନେ ଜାଣି ଜାଣି ବିଶ୍ୱ ଅର୍ଥନୀତିରେ ମୁକୁଳା ଅର୍ଥନୀତିର ବାଆ ବୁହାଇ ଦେଲାପରେ ତୃତୀୟ ବିଶ୍ୱର ଅମେରୁଦଣ୍ଡୀ ମଧ୍ୟବିତ୍ତ ଶ୍ରେଣୀ ମନରେ ଡଲାର ନିଶା ଲାଗିଲା । ତା'ର ସୁଯୋଗ ନେଇ ବିଶ୍ୱର ବଣିକରାଷ୍ଟ୍ରମାନେ ଖୁବ୍ ସୁନ୍ଦର ଚାଲ୍ ଖେଳୁଛନ୍ତି । ସେମାନଙ୍କ ଦେଶରେ ପରିବେଶବିତ୍‌ମାନଙ୍କର ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇ ସେମାନେ ପରିବେଶ ପ୍ରଦୂଷଣକାରୀ ପଦାର୍ଥମାନଙ୍କର ''ଉତ୍ପାଦନକୁ'' ତୃତୀୟ ବିଶ୍ୱର ଗରୀବ ରାଷ୍ଟ୍ରମାନଙ୍କ ଉପରେ ଲଦି ଦେଇ ଡଲାର ମୋହ ଦେଖାଇ ସେସବୁକୁ ଆମଦାନୀ କରି ଏକଚାଟିଆ ଭାବରେ 'ଉପଭୋଗ' କଲେ । ଚିଙ୍ଗୁଡି ଉତ୍ପାଦନ ଅତ୍ୟନ୍ତ ପ୍ରଦୂଷଣକାରୀ ହୋଇଥିବାରୁ ଏ କ୍ଷେତ୍ରରେ ଏଇ ଚାଲ୍ ଅତ୍ୟନ୍ତ ଫଳପ୍ରଦ ହୋଇଛି । ତୃତୀୟ ବିଶ୍ୱ ଦେଶମାନଙ୍କର ଉପକୂଳ ଏବେ ସବୁ ଚିଙ୍ଗୁଡିଚାଷରେ ସଢୁଛି ଏବଂ ଏହା ତୃତୀୟ ବିଶ୍ୱରେ ଗୋଟିଏ ଶକ୍ତିଶାଳୀ ମାଫିଆ ଗୋଷ୍ଠୀକୁ ଜନ୍ମ ଦେଇଛି । ଅଥଚ ଏ ଦେଶ ମାନଙ୍କର ଲୋକଙ୍କ ପାଇଁ ଏ ଚିଙ୍ଗୁଡ଼ି ଦୁର୍ଲ୍ଲଭ । ଚିଙ୍ଗୁଡି ଖାଉଛନ୍ତି ଜାପାନୀ ଓ ଆମେରିକାର ଲୋକ କିନ୍ତୁ ଦାଉ ସହୁଛନ୍ତି ଆମ ଦେଶର ଗରୀବ ଜନତା । ଏଇ କେତୋଟି ବର୍ଷ ଭିତରେ ଚିଲିକାର ମାଛ, କଙ୍କଡ଼ା, ଏମିତି କି ବାଲୁଗାଁ ଲୋକଙ୍କ ପାଇଁ ବି ସାତ ସପନ ହେଲାଣି । ଆଉ ଚିଙ୍ଗୁଡ଼ି ଚାଷକୁ ନେଇ ପ୍ରଶାସନିକ ପୃଷ୍ଠପୋଷକତାରେ ଯେ ମାଫିଆରାଜର ବିକାଶ ଘଟିଛି, ସାରା ପୃଥିବୀରେ ତା'ର ପ୍ରଥମ ପରିପ୍ରକାଶ ଘଟିଛି ଓଡ଼ିଶା ଉପକୂଳରେ । ୧୯୯୬ ରେ ବାଲେଶ୍ୱର ଜିଲ୍ଲାର ଅଡୁଆଁ ଗୁଳିକାଣ୍ଡ, ଏବେ ଚିଲିକା ଗୁଳିକାଣ୍ଡ, ଏବଂ ଆଉ କେତେ ଜାଗାରେ ବୋମା ବନ୍ଧୁକ ମାଡ଼ ତା'ର କେତୋଟି ମାତ୍ର ଉଦାହରଣ ।

# ଚିଲିକା ଉପରେ ନ୍ୟାୟାଳୟମାନଙ୍କ ରାୟ :

## ଓଡ଼ିଶା ଉଚ୍ଚ ନ୍ୟାୟାଳୟଙ୍କ ରାୟ : ୨୩.୧୧.୧୯୯୩

୩୧.୧୨.୯୧ ତାରିଖରେ ସରକାରଙ୍କ ତରଫରୁ ପ୍ରଣୟନ କରାଯାଇଥିବା ଲିଜ୍ ନୀତିକୁ ବିରୋଧ କରି ଖଜାମୁହଁ ପ୍ରାଥମିକ ମତ୍ସ୍ୟଜୀବୀ ସମବାୟ ସମିତି ଏବଂ ଅନ୍ୟମାନଙ୍କ ମାଧ୍ୟମରେ ମତ୍ସ୍ୟଜୀବୀମାନଙ୍କ ତରଫରୁ ଓଡ଼ିଶା ହାଇକୋର୍ଟରେ ୧୯୯୨ ମସିହାରେ ଏକ ମକଦ୍ଦମା ଦାଏର୍ କରାଯାଇ ଥିଲା । ଏଇ ମୋକଦ୍ଦମାରେ ସମ୍ପୂର୍ଣ୍ଣ ଚିଲିକା ବ୍ୟାପାରକୁ ଅନୁଧ୍ୟାନ କରିବା ପାଇଁ ହାଇକୋର୍ଟ ତରଫରୁ ଅଧ୍ୟାପକ ଘନଶ୍ୟାମ ଦାସଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଯାଇଥିଲା । ଅନ୍ୟାନ୍ୟ ବିଷୟ ମାନଙ୍କ ମଧ୍ୟରେ ଏଇ କମିଟି ଚିଲିକାରେ ଚିଙ୍ଗୁଡ଼ି ଚାଷ ଏବଂ ମାଫିଆରାଜ ଉପରେ ମନ୍ତବ୍ୟ ଦେଇ କହିଥିଲେ ଯେ,

୧. ଅଶୀ ଦଶକରେ ଚିଲିକାରେ ମାଛ ଚାଷ ଏବଂ ଚିଙ୍ଗୁଡ଼ି ଚାଷ ଆରମ୍ଭ ହେବା ପରେ ପ୍ରାଥମିକ ମତ୍ସ୍ୟଜୀବୀ ସମବାୟ ସମିତିମାନଙ୍କ ତରଫରୁ ବହୁ ପରିମାଣରେ ଲିଜ୍ ଜାଗାକୁ ସବଲିଜ୍ ଦିଆଯାଇଛି ଏବଂ ଅଣମତ୍ସ୍ୟଜୀବୀ ଓ ବାହାର ଲୋକଙ୍କ ଦ୍ୱାରା ମାଛଧରା ଉତ୍ସ ମାନଙ୍କୁ ବ୍ୟାପକ ପରିମାଣରେ ଜବର ଦଖଲ କରାଯାଇଛି । ତା' ସଙ୍ଗେ ସଙ୍ଗେ ପାରମ୍ପରିକ ମାଛଧରା ଜାଗା ଗୁଡ଼ିକୁ ବ୍ୟାପକ ଭାବରେ ମଧ୍ୟ ଚିଙ୍ଗୁଡ଼ି ଚାଷ ପୋଖରୀ ଏବଂ ଘେରିରେ ପରିଣତ କରିଦିଆଯାଇଛି ।

୨. ବ୍ୟାପକ ମାଛ ଚାଷ ଦ୍ୱାରା ଅଣ ମତ୍ସ୍ୟଜୀବୀ ଏବଂ ବାହାର ଲୋକଙ୍କ ଦ୍ୱାରା ମତ୍ସ୍ୟଜୀବୀମାନଙ୍କ ପାରମ୍ପରିକ ଅଧିକାର ଏବଂ ସ୍ୱାର୍ଥକୁ ସଂକୁଚିତ କରାଯାଇଛି ।

୩. ତୃତୀୟ ପକ୍ଷକୁ ସବ୍‌ଲିଜ୍ ଦେବା ଏବଂ ବେଆଇନ୍ ଜବର ଦଖଲ ଚିଲିକାରେ ମାଫିଆମାନଙ୍କ ପଶେଇବାର ମୁଖ୍ୟ ମାଧ୍ୟମ ।

୪. ବ୍ୟାପକ, ସଘନ ବା ଅସଘନ ଚିଙ୍ଗୁଡ଼ି ଚାଷ ଚିଲିକାର ପରିବେଶକୁ ସମ୍ପୂର୍ଣ୍ଣ ଧ୍ୱଂସ କରିଦେବ ।

ଦାସ କମିଟି ରିପୋର୍ଟକୁ ଉଦ୍ଧାର କରି ହାଇକୋର୍ଟ ଏଇ ମୋକଦ୍ଦମାରେ , ୨୩-୧୧-୯୩ ତାରିଖର ତାଙ୍କ ରାୟରେ ଚିଲିକାର ମାଫିଆରାଜ ବିଷୟରେ ଉଲ୍ଲେଖ କରିଛନ୍ତି ଯେ, *" ଏଇ ମାଫିଆମାନେ କଟକ, ପୁରୀ, ଭୁବନେଶ୍ୱରରେ ରହି ବିଦେଶୀ ଜମିଦାରଙ୍କ ଭଳି ଚିଲିକା ଉପରେ ସେମାନଙ୍କର କର୍ତ୍ତୃତ୍ୱ ଜାହିର୍ କରୁଛନ୍ତି "* ଏବଂ *ସେମାନେ ସବୁ " ବଡ ବଡ ରାଜନୈତିକ ନେତା କିମ୍ବା ସେମାନଙ୍କର ସମ୍ପର୍କୀୟ, କ୍ଷମତାଶାଳୀ ଅଫିସର, ପଇସା ବାଲା ଲୋକ ଯେଉଁମାନଙ୍କର କି ସରକାରଙ୍କ ଉପରେ ପ୍ରଭାବ ରହିଛି" " ଏଇ ମାଫିଆ ମାନେ ଏବେ ଚିଲିକାର ପ୍ରକୃତ ପ୍ରଭୁ ଏବଂ ମତ୍ସ୍ୟ ଜୀବୀମାନଙ୍କର ଭାଗ୍ୟବିଧାତା ସାଜି ସେଠାରେ ସର୍ବନାଶ ଆରମ୍ଭ କରିଛନ୍ତି । ଆହୁରି ମଧ୍ୟ ଜଣାପଡେ ଯେ, ବନ୍ଧୁକ, ରିଭଲଭର , ଏ.କେ. ୪୭ ଏବଂ ବୋମା ଭଳି ମାରାତ୍ମକ ଅସ୍ତ୍ରଦ୍ୱାରା ସେମାନେ ସଜ୍ଜିତ । "ସେମାନେ ସବୁ ଜବର ଦଖଲ ଏବଂ ହ୍ରଦ ଇଲାକାରେ ସମସ୍ତ ବେଆଇନ କାର୍ଯ୍ୟକଳାପର ମୂର୍ତ୍ତିମନ୍ତ ପ୍ରତୀକ ; ସ୍ଥାନୀୟ ଲୋକମାନଙ୍କୁ ସେମାନେ ଭୟଭୀତ କରାଇ ମାଛ ଧରା ଉତ୍ସ ଗୁଡିକ ନିଜ କବଜାରେ ରଖିଛନ୍ତି । ଚିଲିକା କୂଳ ଏବଂ ଚିଲିକା ଭିତରେ ବୃହଦାକାରର ଚିଙ୍ଗୁଡି ଚାଷ ଚିଲିକା ପରିବେଶକୁ ନିଶ୍ଚିତଭାବେ ନଷ୍ଟ କରିବ" ।*

ହାଇକୋର୍ଟ ତାଙ୍କ ରାୟରେ ପୁନଶ୍ଚ କହିଛନ୍ତି ଯେ, *''ଆମେ ଭାବୁଛୁ ଯେ, ସରକାର ଯଦି ପ୍ରକୃତରେ ଇଚ୍ଛା କରନ୍ତି ତେବେ ମାଫିଆମାନେ ସେମାନଙ୍କର ପୃଷ୍ଠପୋଷକ ରାଜନୈତିକ ନେତା ( କିମ୍ବା ସେମାନଙ୍କ ସମ୍ପର୍କୀୟ ) ଏବଂ ଅଫିସରଙ୍କ ଛତିଆରେ ଆଇନ କାନୁନକୁ ଉପହାସ କରି ସେମାନଙ୍କ ଜାଲ ବିଛାଇବା ପୂର୍ବରୁ ଏଇ ଆତଙ୍କକୁ ନିୟନ୍ତ୍ରଣ କରିବା ନିହାତି ଅସମ୍ଭବ ନୁହେଁ''* । ଚିଲିକା ଲିଜ୍ ନୀତିରେ ବିଭିନ୍ନ ପ୍ରକାର କାଟ୍‌ଛାଣ୍ଟ କରି ୨୩.୧୧.୯୩ ତାରିଖରେ ହାଇକୋର୍ଟ ଦେଇଥିବା ଆଦେଶର ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ଗୁଡିକ ହେଲା :

୧. ହାଇକୋର୍ଟ ମତ୍ସ୍ୟଜୀବୀମାନଙ୍କର ପାରମ୍ପରିକ ଅଧିକାରକୁ ଗ୍ରହଣ କରିଥିଲେ ସୁଦ୍ଧା ପରିବର୍ତ୍ତିତ ଅର୍ଥନୈତିକ ପରିସ୍ଥିତିରେ ମତ୍ସ୍ୟଜୀବୀ ଏବଂ ଅଣମତ୍ସ୍ୟଜୀବୀମାନଙ୍କ ମଧ୍ୟରେ ବିଭେଦ ଏବଂ ବିଦ୍ୱେଷକୁ ବନ୍ଦ କରିବା ପାଇଁ ଚିଲିକା ଉପରେ ଅଣମତ୍ସ୍ୟଜୀବୀଙ୍କ ଅଧିକାରକୁ ସୀମିତ ସ୍ୱୀକୃତି ଦେଇଥିଲେ । ହାଇକୋର୍ଟ ଚିଲିକାର ମୋଟ ୪୭,୦୦୦ ଏକର ମତ୍ସ୍ୟ-ଉତ୍ସ ମଧ୍ୟରୁ ୨୭୦୦୦ ଏକର ମାଛଧରା ଜାଗା ଭାବରେ କେବଳ ମତ୍ସ୍ୟଜୀବୀମାନଙ୍କୁ ଏବଂ ଅବଶିଷ୍ଟ ୨୦,୦୦୦ ଏକରକୁ, ମାଛ ଚାଷ ଜାଗା ଭାବରେ, ୧୪,୦୦୦ ଏକର ଅଣମତ୍ସ୍ୟଜୀବୀ ଏବଂ ୬୦୦୦ ଏକର ମତ୍ସ୍ୟଜୀବୀମାନଙ୍କୁ ଲିଜ୍ ଦିଆଯିବାକୁ ଆଦେଶ ଦେଇଥିଲେ ।

୨. ସମ୍ବିଧାନର ୨୧ ଧାରାରେ ଉଲ୍ଲିଖିତ ଜୀବନ ଜୀବିକାର ଅଧିକାରରେ, ଏକ ପ୍ରଦୂଷଣମୁକ୍ତ ପରିବେଶରେ ଜୀବନ ଧାରଣ କରିବାର ଅଧିକାର ନିହିତ ବୋଲି ହାଇକୋର୍ଟ ତର୍ଜମା କରି ଚିଲିକାର ପ୍ରଦୂଷଣକାରୀ ସଘନ ଚିଙ୍ଗୁଡିଚାଷକୁ ସମ୍ପୂର୍ଣ୍ଣ ନିଷିଦ୍ଧ କରିଥିଲେ । ପରିବର୍ତ୍ତିତ ପରିସ୍ଥିତିର ବାଧ୍ୟବାଧକତାରେ ଅଳ୍ପ କ୍ଷତିକାରକ ବୋଲି ବିଚାର କରି ଚିଲିକା କୂଳରେ ''ଉଠାପାଣି'' ଓ ''ଡିଆଁ'' ଭଳି ସୀମିତ ଅଞ୍ଚଳ ଗୁଡିକରେ କେବଳ ପାରମ୍ପରିକ ଅସଘନ (Traditional extensive) ପ୍ରଣାଳୀରେ ଚିଙ୍ଗୁଡି ଚାଷ କରାଯାଇ ପାରିବ ବୋଲି ଆଦେଶ ଦେଇଥିଲେ ।

୩. ଚିଲିକାର ପୁନଶ୍ଚ ଆଉ କୌଣସି ମାଛଧରା ଜାଗାକୁ ମାଛଚାଷ ଜାଗାରେ ପରିବର୍ତ୍ତନ କରାଯାଇପାରିବ ନାହିଁ ବୋଲି ହାଇକୋର୍ଟ ମଧ୍ୟ ନିର୍ଦ୍ଦେଶ ଦେଇଥିଲେ । ଏହାଦ୍ୱାରା ଚିଲିକାର ମାଫିଆରାଜ ନିୟନ୍ତ୍ରିତ ହୋଇଯିବ ବୋଲି ଆଶା କରି ହାଇକୋର୍ଟ କହିଥିଲେ ଯେ, ଏହା ସତ୍ତ୍ୱେ ବି ଯଦି ମାଫିଆରାଜ ବୃଦ୍ଧି ପାଏ, ତେବେ ସେମାନଙ୍କୁ ଦୃଢ଼ ହସ୍ତରେ ଦମନ କରିବାକୁ ଏବଂ ସେମାନେ ଯେମିତି ଚିଲିକାରୁ ସାର ଭାଗ ଲୁଟି ନନିଅନ୍ତି ସେକଥା ଦେଖିବାକୁ ସରକାରଙ୍କର ଦାୟିତ୍ୱ ରହିଛି ।

ସମସ୍ତ ସଦିଚ୍ଛା ସତ୍ତ୍ୱେ କିନ୍ତୁ ହାଇକୋର୍ଟଙ୍କ ଏଇ ରାୟ ବରଂ ମାଫିଆରାଜକୁ ଅଧିକ ଦୃଢ଼ୀଭୂତ ଏବଂ ସଂପ୍ରସାରିତ କରିବାରେ ସାହାଯ୍ୟ କଲା, କାରଣ ମାଛ ଚାଷ ହିଁ ଚିଲିକାର ମାଫିଆରାଜର ମୂଳ କାରଣ । ମାଛଚାଷକୁ ଉଚ୍ଛେଦ ନକରି ହାଇକୋର୍ଟ ଏହାକୁ ଆଇନସିଦ୍ଧ କରିଥିଲେ । ତାହାହିଁ ଚିଲିକା ପାଇଁ କାଳ ହେଲା ।

# ଚିଲିକାରେ ଚିଙ୍ଗୁଡି ଚାଷ ଉପରେ ସମ୍ପୂର୍ଣ୍ଣ ନିଷେଧାଦେଶ

## ସୁପ୍ରିମ କୋର୍ଟ ରାୟ -୧୧.୧୨.୯୬

ସାରାଦେଶରେ ଚିଙ୍ଗୁଡି ଚାଷର ପ୍ରଦୂଷଣକାରୀ କୁପ୍ରଭାବ ଉପରେ ଉଚ୍ଚତମ ନ୍ୟାୟାଳୟରେ, ବିଶିଷ୍ଟ ଗାନ୍ଧୀବାଦୀ ଶ୍ରୀ ଏସ୍. ଜଗନ୍ନାଥ ଦାୟର କରିଥିବା ମକଦ୍ଦମାରେ ସୁପ୍ରିମ କୋର୍ଟ ତାଙ୍କର ୧୧.୧୨.୯୬ ତାରିଖ ରାୟରେ ,ଜାତୀୟ ପରିବେଶ ଇଞ୍ଜିନିୟରିଂ ଏବଂ ଗବେଷଣା ପ୍ରତିଷ୍ଠାନ ( NEERI) ଏବଂ ଅଲଗାରସ୍ୱାମୀଙ୍କ ରିପୋର୍ଟକୁ ଭିତ୍ତିକରି, ନିର୍ଦ୍ଦିଷ୍ଟ ଭାବରେ ଚିଲିକା ବିଷୟରେ ଉଲ୍ଲେଖ କରିଛନ୍ତି । NEERI ତାଙ୍କ ରିପୋର୍ଟରେ ଓଡ଼ିଶା ଏବଂ ପଶ୍ଚିମବଙ୍ଗ ଉପକୂଳରେ ସଘନ ଚିଙ୍ଗୁଡି ଚାଷକୁ ସମ୍ପୂର୍ଣ୍ଣ ନିଷିଦ୍ଧ କରିବାକୁ ସୁପାରିଶ କରିଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଭାରତ ସରକାରଙ୍କ ୧୯.୦୨.୧୯୯୧ ତାରିଖର ନୋଟିଫିକେସନ ଅନୁସାରେ ଚିଲିକା କୋଷ୍ଟାଲ ରେଗୁଲେଟୋରି ଜୋନ୍ - ୧ (CRZ-1) ଭାବେ ପରିଗଣିତ ହୋଇଛି, ଅର୍ଥାତ୍ ପରିବେଶ ଦୃଷ୍ଟିରୁ ଚିଲିକା ଅତ୍ୟନ୍ତ ସମ୍ବେଦନଶୀଳ ଏବଂ ବିଶେଷ ସୁରକ୍ଷାର ଆବଶ୍ୟକତା ରଖେ । ଏଇ ଦୃଷ୍ଟିରୁ ସୁପ୍ରମ୍‌କୋର୍ଟ ତାଙ୍କ ଉପରୋକ୍ତ ରାୟରେ, କେବଳ ଚିଲିକାରେ ନୁହେଁ ବରଂ ତା'ର ଚାରିପାଖରେ ୧୦୦୦ ମିଟର ଭିତରେ ଯେ କୌଣସି ପ୍ରକାର ଚିଙ୍ଗୁଡି ଚାଷକୁ ସମ୍ପୂର୍ଣ୍ଣ ନିଷେଧ କରିବାକୁ ଆଦେଶ ଦେଇଛନ୍ତି । ତା' ଛଡା ଏଇ ୧୦୦୦ ମିଟର ଅଞ୍ଚଳ ଭିତରେ ଏ ଯାକେ ରହିଥିବା ଚିଙ୍ଗୁଡି ଫାର୍ମମାନେ ସେ ଅଞ୍ଚଳରେ କରିଥିବା ପରିବେଶ ପ୍ରଦୂଷଣ ପାଇଁ କ୍ଷତିଗ୍ରସ୍ତ ଲୋକଙ୍କୁ କ୍ଷତିପୂରଣ ଦେବେ । ୧୦୦୦ ମିଟର ଅଞ୍ଚଳ ବାହାରେ ମଧ କୌଣସି ଚିଙ୍ଗୁଡି ଫାର୍ମ ବସାଇବାକୁ ହେଲେ କୋର୍ଟଙ୍କ ଦ୍ୱାରା ସୁପାରିଶ କରାଯାଇଥିବା ବିଶେଷ କର୍ତ୍ତୃପକ୍ଷଙ୍କଠାରୁ ପୂର୍ବରୁ ଅନୁମତି ନେବାକୁ ପଡିବ । ଚିଲିକାର ୧୦୦୦ ମିଟର ଅଞ୍ଚଳ ଭିତରେ ଥିବା ସମସ୍ତ ଚିଙ୍ଗୁଡି ଫାର୍ମକୁ ଭାଙ୍ଗି ଦେବା ପାଇଁ ମଧ ସୁପ୍ରିମକୋର୍ଟ ନିର୍ଦ୍ଦିଷ୍ଟ ସମୟ ସୀମା ନିର୍ଦ୍ଧାରଣ କରିଥିଲେ ।

ସୁପ୍ରିମକୋର୍ଟଙ୍କ ଏଇ ରାୟଦ୍ୱାରା, ଓଡ଼ିଶା ହାଇକୋର୍ଟ ୨୩.୧୧.୯୩ ତାରିଖରେ ସୀମିତ ଅଞ୍ଚଳରେ ପାରମ୍ପରିକ ଅସଘନ (Traditional Extensive) ପ୍ରଣାଳୀରେ ଚିଙ୍ଗୁଡି ଚାଷ ପାଇଁ ଦେଇଥିବା ଅନୁମତି ମଧ କାଟ୍ ଖାଇଯାଇ ଚିଲିକାରେ ଚିଙ୍ଗୁଡି ଚାଷକୁ ସମ୍ପୂର୍ଣ୍ଣ ନିଷେଧ କରାଯାଇଥିଲା । *( ଉଲ୍ଲେଖଯୋଗ୍ୟ ଯେ ଅଲଗାର ସ୍ୱାମୀଙ୍କ ରିପୋର୍ଟରେ Traditional Extensive ପ୍ରଣାଳୀରେ ଚିଙ୍ଗୁଡି ଚାଷ ସଂମ୍ପର୍କରେ କୌଣସି ଉଲ୍ଲେଖ ନାହିଁ)*

# ଚିଲିକାରୁ ମାଫିଆ ହଟାଇବାରେ ସରକାରୀ ଧୋକାବାଜି

୨୩.୧୧.୯୩ ତାରିଖରେ ହାଇକୋର୍ଟଙ୍କ ଉକ୍ତ ରାୟ ପରେ ୧୯୯୪ ମେ' ମାସରେ ଓଡ଼ିଶା ସରକାର , ହାଇକୋର୍ଟ ଦେଇଥିବା ପରାମର୍ଶ ଅନୁଯାୟୀ ଚିଲିକାର ସଂଶୋଧିତ ଲିଜ୍ ନୀତି ପ୍ରଣୟନ କଲେ ବୋଲି ଦାବି କରାଗଲା । ଏହି ନୀତି ଅନୁଯାୟୀ କେବଳ ପାରମ୍ପରିକ ଅସଘନ ପ୍ରଣାଳୀରେ ଚିଙ୍ଗୁଡି ଚାଷ ବ୍ୟତୀତ ଚିଲିକାର ଯେକୌଣସି ପ୍ରକାର ସଘନ ଚିଙ୍ଗୁଡି ଚାଷକୁ ସମ୍ପୂର୍ଣ୍ଣ ନିଷିଦ୍ଧ କରାଗଲା । ସବ୍ ଲିଜ ବ୍ୟବସ୍ଥାକୁ ମଧ ସମ୍ପୂର୍ଣ୍ଣ ନିଷିଦ୍ଧ କରାଗଲା । ଚିଲିକାର ପରିବେଶ ସୁରକ୍ଷା ଏବଂ ପାରମ୍ପରିକ ପ୍ରଣାଳୀରେ ଚିଙ୍ଗୁଡି ଚାଷର ପ୍ରଭାବ ନିରୀକ୍ଷଣ କରିବାପାଇଁ ଏକ ବିଶେଷଜ୍ଞ କମିଟି ଗଠନ କରାଯିବାର ପ୍ରସ୍ତାବ ରହିଲା । ଚିଲିକାକୁ ବାହାର ଲୋକଙ୍କ ଜବର ଦଖଲରୁ ମୁକ୍ତ ରଖିବା ପାଇଁ ଏବଂ ସେମାନଙ୍କ ଅନୁପ୍ରବେଶକୁ ରୋକିବା ପାଇଁ

ଜଣେ ମାଜିଷ୍ଟ୍ରେଟ, ଜଣେ ଡି.ଏସ୍.ପି. ଏବଂ ଗୋଟିଏ ସେକ୍ସନ ସଶସ୍ତ୍ର ପୋଲିସ ଇତ୍ୟାଦିକୁ ନେଇ ଏକ ଟାସ୍କ ଫୋର୍ସ ଗଠନ କରାଯିବାର ମଧ୍ୟ ପ୍ରସ୍ତାବ ରହିଲା । କିନ୍ତୁ ସବୁ କିଛି ଖାଲି କାଗଜ କଲମରେ ରହିଗଲା । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ଚିଲିକାରେ ଯେ କୌଣସି ପ୍ରକାର ମାଛ ଚାଷକୁ ବିରୋଧକରି ମତ୍ସ୍ୟଜୀବୀମାନେ ମୂଳରୁ ଏଇ ନୀତିକୁ ଅଗ୍ରାହ୍ୟ କରିଦେଇଥିଲେ । ୨୭.୦୬.୯୬ ତାରିଖ ଦିନ ମୁଖ୍ୟମନ୍ତ୍ରୀଙ୍କ ସଭାପତିତ୍ୱରେ ଚିଲିକା ବିଷୟରେ ଅନୁଷ୍ଠିତ ଏକ ବୈଠକରେ ଖୋଦ୍ ରାଜସ୍ୱ ମନ୍ତ୍ରୀ ବୟାନ ଦେଲେ ଯେ, ''ଚିଲିକା ଏବଂ ତାର ଆଖ ପାଖ ଅଞ୍ଚଳରେ ଅନେକ ଗୁଡିଏ ଜାଗା ଜବର ଦଖଲରେ ରହିଛି । ଏହାଉପରେ ବନ୍ଧ ନିର୍ମାଣ କରାଯାଇ ବେଆଇନ ଚିଙ୍ଗୁଡି ଚାଷ ହେଉଛି । ପୁରୀ, ଖୋର୍ଦ୍ଧା ଏବଂ ଗଞ୍ଜାମ ଜିଲ୍ଲାରେ ଯଥାକ୍ରମେ ୧୦,୦୦୦, ୪୧୦ ଏବଂ ୭୩୩ ଏକର ପରିମିତ ଜବର ଦଖଲ ଚିହ୍ନଟ କରାଯାଇଛି '' । ଏହି ବିଠକରେ ପୁଣି ଥରେ ନିଷତ୍ତି ହେଲା ଯେ, (୧) ଚିଲିକାରେ ସଘନ ଚିଙ୍ଗୁଡି ଚାଷକୁ ସମ୍ପୂର୍ଣ୍ଣ ନିଷିଦ୍ଧ କରାଯିବ । (୨) ଚିଲିକା ମୁହାଣରେ କରାଯାଇଥିବା ଚିଙ୍ଗୁଡି ଚାଷ ଦ୍ୱାରା ଚିଲିକା ସହ ସମୁଦ୍ରର ସଂଯୋଗ ବାଧା ପ୍ରାପ୍ତ ହେଉଥିବାରୁ ଅଗଷ୍ଟ ୧୯୯୬ ସୁଦ୍ଧା ତାକୁ ଭାଙ୍ଗି ଦିଆଯିବ । (୩) ଅନ୍ୟ ସମସ୍ତ ଅଣପାରମ୍ପରିକ ପ୍ରଣାଳୀରେ କରାଯାଇଥିବା ଚିଙ୍ଗୁଡି ଚାଷକୁ ଭାଙ୍ଗିଦେବାକୁ ସେପ୍ଟେମ୍ବର ୧୯୯୬ ସୁଦ୍ଧା ନୋଟିସ୍ ଦିଆଯିବ । ତା ୨୭.୦୬.୯୬ ରିଖର ସରକାରୀ ନିଷତ୍ତି ଅନୁସାରେ ଅକ୍ଟୋବର, ୧୯୯୬ ମସିହାରୁ '' ଚିଲିକା ପରିଷ୍କାର ଅଭିଯାନ'' ପୁରୀ କଲେକ୍ଟରଙ୍କ ତତ୍ତ୍ୱାବଧାନରେ ଆରମ୍ଭ କରାଗଲା । ସମ୍ପୂର୍ଣ୍ଣ ୨୦,୦୦୦ ଏକର ଜବରଦଖଲରୁ ପ୍ରାୟ ୧୪,୦୦୦ ଏକର ମୁକ୍ତ କରାଗଲା ବୋଲି କୁହାଗଲା । କିନ୍ତୁ ମାଫିଆମାନଙ୍କ ରାଜନୈତିକ ପ୍ରଭାବରେ, ଜଣେ ଉପମୁଖ୍ୟମନ୍ତ୍ରୀଙ୍କ ପ୍ରତ୍ୟକ୍ଷ ଚାପରେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶରେ '' ଚିଲିକା ପରିଷ୍କାର ଅଭିଯାନ'' ଚଳେଇଥିବା ପୁରୀର ତତ୍‌କାଳୀନ ସବ୍-କଲେକ୍ଟର ଶ୍ରୀ ଧର୍ମାନନ୍ଦ ଦଳେଇଙ୍କୁ, ସେ ଚିଲିକା ଭିତରେ ରହି ଘେରିଭଙ୍ଗା କାର୍ଯ୍ୟ ତଦାରଖ କରୁଥିବାବେଳେ, ୨୪ ଘଣ୍ଟା ଭିତରେ ବଦଳି କରିଦିଆଗଲା । ଶ୍ରୀ ଦଳେଇ ଏହି ଅନ୍ୟାୟ ଆଦେଶ ବିରୋଧରେ ରାଜ୍ୟ ପ୍ରଶାସନିକ ଟ୍ରିବ୍ୟୁନାଲରେ ମକଦ୍ଦମା କଲେ । ଟ୍ରିବ୍ୟୁନାଲର ତତ୍କାଳୀନ ଅଧ୍ୟକ୍ଷ ଶ୍ରୀ ଶରତ ଚନ୍ଦ୍ର ମହାପାତ୍ର ଏଭଳି ଆଦେଶକୁ କେବଳ କାଏମ ରଖିଲେ ନାହିଁ ବରଂ ଶ୍ରୀ ଦଳେଇଙ୍କ ବିରୋଧରେ ସରକାର ଚାହିଁଲେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଲେ । ରାଜନୈତିକ ଓ ଅମଲାତାନ୍ତ୍ରିକ ପୃଷ୍ଠପୋଷକତାରେ ଚିଲିକାରେ ଚାଲିଥିବା ମାଫିଆରାଜର ଦୌରାତ୍ମ୍ୟ ବିଷୟରେ ଗଣମାଧ୍ୟମରେ ହଇଚଇ, ମତ୍ସ୍ୟଜୀବୀମାନଙ୍କ ଆନ୍ଦୋଳନ, ପୂର୍ବରୁ ହାଇକୋର୍ଟର ଆଦେଶ ସତ୍ତ୍ୱେ ଶ୍ରୀ ଦଳେଇଙ୍କ ଏଭଳି ଉଦ୍ଦେଶ୍ୟ ପ୍ରଣୋଦିତ ବଦଳିକୁ ଜଷ୍ଟିସ୍ ମହାପାତ୍ର କିଭଳି ଯେ କାଏମ୍ ରଖିଲେ ତାହା ଜନସାଧାରଣଙ୍କ ମନରେ ଏକ ପ୍ରଶ୍ନବାଚୀ ହୋଇ ରହିଯାଇଛି । ଜଷ୍ଟିସ୍ ମହାପାତ୍ର ତାଙ୍କ ରାୟରେ ଏସବୁ ବିଷୟକୁ କାହିଁକି ଯେ ବିଚାରକୁ ନେଇ ନଥିଲେ ତାହା ଖୁବ ଆଶ୍ଚର୍ଯ୍ୟଜନକ ମନେହୁଏ । ଜଷ୍ଟିସ୍ ମହାପାତ୍ରଙ୍କ ରାୟରେ ଏଇ ଅସଙ୍ଗତି ବିରୋଧରେ ବୁଦ୍ଧିଜୀବୀ ମହଲରୁ ସୁପ୍ରିମକୋର୍ଟଙ୍କୁ ମଧ୍ୟ ପତ୍ର ଲେଖା ଯାଇଥିଲା । କିନ୍ତୁ ସୁପ୍ରିମକୋର୍ଟଙ୍କ ପାଖରୁ କୌଣସି ପ୍ରତିକ୍ରିୟା ପ୍ରକାଶ ପାଇ ନଥିଲା । ବାସ୍, ସରକାରୀ '' ଚିଲିକା ପରିଷ୍କାର ଅଭିଯାନ'' ର ମୁଣ୍ଡି ସେଇଠି ମରିଲା ।

# ମାଫିଆରାଜ ହଟେଇବାକୁ ହାଇକୋର୍ଟ ରେ ପୁଣିଥରେ ମୋକଦ୍ଦମା

ଏହା ମଧ୍ୟରେ ମାନବିକ ଅଧିକାର ସଂଗଠନ (ମାସ୍) ପକ୍ଷରୁ ଅକ୍ଟୋବର, ୧୯୯୬ ମସିହାରେ, ୧୧୪୮୬/୧୯୯୬ ନମ୍ବର ମକଦ୍ଦମା ଅନୁଯାୟୀ, ଓଡ଼ିଶା ହାଇକୋର୍ଟରେ ଚିଲିକା ଉପରେ ଆଉ ଏକ ଜନସ୍ୱାର୍ଥ ମାମଲା ରୁଜୁ କରାଯାଇଥିଲା । ପୂର୍ବରୁ ଦିଆଯାଇଥିବା ହାଇକୋର୍ଟ ଆଦେଶ ଉପରେ ସରକାରୀ ଉଦାସୀନତା ଏବଂ ଚିଲିକାକୁ ମାଫିଆ କବଳରୁ ମୁକ୍ତ କରିବାକୁ ନିଆଯାଉଥିବା ପଦକ୍ଷେପ ଉପରେ ଅଯଥା ସରକାରୀ ହସ୍ତକ୍ଷେପ ବିରୋଧରେ ଅଭିଯୋଗ କରାଯାଇ ଚିଲିକାରୁ ତୁରନ୍ତ ମାଫିଆରାଜ ହଟାଇବା ପାଇଁ ସରକାରୀକଳ ନିଜ କର୍ତ୍ତବ୍ୟରେ ଅବହେଳା କରୁଥିବାରୁ ହାଇକୋର୍ଟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏକ ଟାସ୍କଫୋର୍ସ ଗଠନ କରାଯିବାକୁ ଏଥିରେ ନିବେଦନ କରାଯାଇଥିଲା । ଚିଲିକାର ଦୁରବସ୍ଥା ଅନୁଧ୍ୟାନ କରି ହାଇକୋର୍ଟ କୁ ଏକ ରିପୋର୍ଟ ଦେବାପାଇଁ ମାନବିକ ଅଧିକାର ସଂଗଠନ ତରଫରୁ ମଧ୍ୟ ଏକ ତଥ୍ୟ ଅନୁସନ୍ଧାନକାରୀ ଦଳ ୧୦.୦୫.୯୭ ତାରିଖରୁ ୧୯.୦୫.୯୭ ତାରିଖ ମଧ୍ୟରେ ଚିଲିକା ଭିତରକୁ ଯାଇଥିଲେ । ଚିଙ୍ଗୁଡି ଘେରି ଭାଙ୍ଗିଥିବାର ସରକାରଙ୍କ ଦାବୀ ସତ୍ତ୍ୱେ ଏହି ତଥ୍ୟ ଅନୁସନ୍ଧାନକାରୀ ଦଳ ଚିଲିକାରେ ବିଛେଇ ହୋଇ ରହିଥିବା ଘେରି ସବୁ ଦେଖିଥିଲେ । ସଂଗଠନ ତରଫରୁ ଏହି ରିପୋର୍ଟ ହାଇକୋର୍ଟକୁ ଦିଆଯାଇଥିଲା । ଏଇ ମୋକଦ୍ଦମାରେ, ସରକାରଙ୍କ ତରଫରୁ ଖୋଲାମୁହାଣ ମୋକଦ୍ଦମାରେ ହାଇକୋର୍ଟଙ୍କ ସମସ୍ତ ଆଦେଶ କାର୍ଯ୍ୟକାରୀ କରାଯାଇଛି, ଘେରିଭଙ୍ଗାପାଇଁ ସମସ୍ତ ପଦକ୍ଷେପ ନିଆଯାଇଛି ବୋଲି ହାଇକୋର୍ଟରେ କୁହାଗଲା । ମାନବିକ ଅଧିକାର ସଂଗଠନ ତରଫରୁ ହାଇକୋର୍ଟରେ ଦାଖଲ କରାଯାଇଥିବା ଅନୁସନ୍ଧାନକାରୀ ଦଳଙ୍କ ରିପୋର୍ଟରୁ ସରକାରଙ୍କର ଏ ସଫେଇ କେତେଦୂର ମିଛ ଏବଂ ଧୋକାବାଜି, ତା' ସ୍ପଷ୍ଟ ପ୍ରତିପାଦିତ ହେଉଥିଲେ ମଧ୍ୟ ହାଇକୋର୍ଟ ସରକାରଙ୍କ ସଫେଇକୁ ବିଶ୍ୱାସ କରି ଏଇ ମୋକଦ୍ଦମାଟିର ପରିସମାପ୍ତି ଘୋଷଣା କଲେ । ଖୋଲାମୁହାଣ ମୋକଦ୍ଦମାରେ ଚିଲିକା ବିଷୟରେ ହାଇକୋର୍ଟଙ୍କ ତରଫରୁ ପୂର୍ବରୁ ପ୍ରକାଶିତ ସମସ୍ତ ଉତ୍କଣ୍ଠା, ଆବେଗ, ଆଗ୍ରହରେ ଏଥର ସମ୍ପୂର୍ଣ୍ଣ ଭଟ୍ଟା ପଡିଯାଇଥିଲା ।

## ଚିଙ୍ଗୁଡିଚାଷର କୁପ୍ରଭାବ ଉପରେ ବିଧାନସଭା ଗୃହ କମିଟି : ମଧ୍ୟବର୍ତ୍ତୀ କାଳୀନ ସୁପାରିଶ (୬.୧୨.୯୬)

ତତ୍କାଳୀନ ରାଜସ୍ୱମନ୍ତ୍ରୀ ଶ୍ରୀ କାହ୍ନୁ ଚରଣ ଲେଙ୍କାଙ୍କ ଅଧ୍ୟକ୍ଷତାରେ ଚିଲିକା ସମେତ ରାଜ୍ୟରେ ସରକାରୀ ଏବଂ ଘରୋଇ ଜମି ଜବରଦଖଲକରି କରାଯାଉଥିବା ପ୍ରଦୂଷଣକାରୀ ଚିଙ୍ଗୁଡିଚାଷକୁ ରୋକିବା ପାଇଁ ୨୪.୧୧.୯୫ ତାରିଖ ଦିନ ଓଡିଶା ବିଧାନ ସଭାର ଏକ ଗୃହ କମିଟି ଗଠନ କରାଯାଇଥିଲା । ଏଥିରେ ଅନ୍ୟମାନଙ୍କ ସମେତ ଚିଲିକା ଅଞ୍ଚଳର ସମସ୍ତ ଏମ୍.ଏଲ୍.ଏ. ଯଥା ଦେବେନ୍ଦ୍ରନାଥ ମାନସିଂ ଏବଂ ଲଳାଟେନ୍ଦୁ ବିଦ୍ୟାଧର ମହାପାତ୍ର ପ୍ରଭୃତି ସଭ୍ୟଥିଲେ । ୬.୧୨.୯୬ରେ ବିଧାନ ସଭାରେ ଉପସ୍ଥାପିତ ଏଇ କମିଟିର ରିପୋର୍ଟରେ ନିମ୍ନଲିଖିତ ସୁପାରିଶମାନ କରାଯାଇଥିଲା ।

୧. ରାଜ୍ୟ ସରକାର ପରିବେଶ ଆଇନ୍, ୧୯୮୬, କୋଷ୍ଟାଲ ରେଗୁଲେଟୋରି ଜୋନ୍, ସୁପ୍ରିମକୋର୍ଟ ଆଦେଶକୁ ଆଖି ଆଗରେ ରଖି ଏକ ଦୀର୍ଘକାଳୀନ ଚିଙ୍ଗୁଡିଚାଷ ନୀତି ପ୍ରଣୟନ କରିବା ଉଚିତ । ସେତେଦିନ ପର୍ଯ୍ୟନ୍ତ ସଘନ ଏବଂ ଅର୍ଦ୍ଧସଘନ ଚିଙ୍ଗୁଡି ଚାଷକୁ ସମ୍ପୂର୍ଣ୍ଣ ନିଷିଦ୍ଧ କରାଯିବା ଉଚିତ । ଯେ କୌଣସି ଅଞ୍ଚଳରେ, କେବଳ ପାରମ୍ପରିକ ମତ୍ସ୍ୟଜୀବୀଙ୍କ ଦ୍ୱାରା ମାଛଧରିବା ବ୍ୟତୀତ ଅନ୍ୟ କୌଣସି ଉପାୟରେ ମତ୍ସ୍ୟ ସମ୍ପଦର ବିନିଯୋଗ ହେବ ନାହିଁ ।

ଚିଲିକାରେ ଜବର ଦଖଲ ଏବଂ ଅବରୋଧ ଓ ରାଜ୍ୟର ଉପକୂଳରେ ବେଆଇନ୍ ଚିଙ୍ଗୁଡି ଚାଷକୁ ଯଥାଶୀଘ୍ର ହଟାଯିବା ଉଚିତ । ପୁରୀ କଲେକ୍ଟରଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ଉଚ୍ଛେଦ ଅଭିଯାନକୁ କେବଳ ପୁଣି ଆରମ୍ଭ କରାଯିବା ଆବଶ୍ୟକ ନୁହେଁ ବରଂ ଆହୁରି ସୁଦୃଢ଼ କରାଯିବା ଉଚିତ ଯେତେଦିନ ପର୍ଯ୍ୟନ୍ତ ଏଇ ଉଚ୍ଛେଦ କାମ ସମ୍ପୂର୍ଣ୍ଣ ରୂପେ ସଫଳ ନହୋଇଛି ।

୨. ଚିଲିକା ଭଳି ବୈଚିତ୍ର୍ୟ ପୂର୍ଣ୍ଣ ଜଳାଶୟର ସୁରକ୍ଷା ରାଜ୍ୟ ସରକାରଙ୍କ ପ୍ରାଥମିକ କର୍ତ୍ତବ୍ୟ ହେବା ଉଚିତ । ଚିଲିକାରେ ପ୍ରଶାସନିକ ଅନୁପଯୋଗିତାକୁ ନେଇ ଏବେ ଯେଉଁ ସମାଲୋଚନା ହେଉଛି ତାହା ଯଥାର୍ଥ । କମିଟି ଦୃଢ଼ ଭାବରେ ସୁପାରିଶ କରୁଛନ୍ତି ଯେ, ରାଜ୍ୟ ସରକାର '' ଚିଲିକା ହ୍ରଦର ସୁରକ୍ଷା ଏବଂ ଉନ୍ନୟନ ' ପାଇଁ ତୁରନ୍ତ ଏକ ସ୍ୱତନ୍ତ୍ର ଆଇନ୍ ପ୍ରଣୟନ କରିବାକୁ ପଦକ୍ଷେପ ନିଅନ୍ତୁ ।

୩. ଜଳର ମୁକ୍ତ ପ୍ରବାହକୁ ଅବରୋଧ କରିବା, ବେଆଇନ ମାଛ ଚାଷ, କୋଷ୍ଟାଲ ରେଗୁଲେଟୋରି ଆଇନ୍ ଉଲଙ୍ଘନ ଏବଂ ଅନ୍ୟାନ୍ୟ ପରିବେଶ ସମ୍ବନ୍ଧୀୟ ଅପରାଧ ସଂପର୍କିତ ମାମଲାର ଶିଘ୍ର ଫଏସଲା ପାଇଁ ସ୍ୱତନ୍ତ୍ର ଅଦାଲତ ବସାଯିବା ଉଚିତ ।

## ସବକମିଟି ରିପୋର୍ଟ

ନିକଟ ଅତୀତରେ ରାଜ୍ୟ ଶିଳ୍ପ ରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଦେବେନ୍ଦ୍ର ନାଥ ମାନସିଂଙ୍କ ଅଧକ୍ଷତାରେ ଗଠିତ ଏହି ଗୃହ କମିଟିର ଏକ ସବ୍ କମିଟି ନିର୍ଦ୍ଦିଷ୍ଟ ଭାବରେ ଚିଲିକାର ଚିଙ୍ଗୁଡି ଚାଷ ଉପରେ ଅନୁଧ୍ୟାନ କରି ତାଙ୍କର ରିପୋର୍ଟରେ ଏଇ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ, *ଚିଲିକାର କିଛି ଅଞ୍ଚଳକୁ ଚିଙ୍ଗୁଡି ଚାଷ ପାଇଁ ଲିଜ୍ ପ୍ରଦାନ ପ୍ରକ୍ରିୟା କେତେକ ଲୋକଙ୍କୁ, ସେମାନଙ୍କର ଧନବଳ ଏବଂ ପ୍ରଭାବ ବିସ୍ତାର ଦ୍ୱାରା ଚିଲିକାରେ ମନଇଚ୍ଛା ଜବର ଦଖଲ କରିବାକୁ ଉତ୍ସାହିତ କରିଛି ।* ଏଇ ପରିପ୍ରେକ୍ଷୀରେ ସବ୍ କମିଟି ନିମ୍ନ ଲିଖିତ ସୁପାରିଶମାନ କରିଛନ୍ତି । (୧) ସମସ୍ତ ପ୍ରକାର ଘେରି ଏବଂ ଜବର ଦଖଲରୁ ଚିଲିକାକୁ ମୁକ୍ତ କରାଯିବା ଆବଶ୍ୟକ । ଚିଲିକାର କୌଣସି ଅଂଶକୁ କୌଣସି ପ୍ରକାର ମାଛ ବା ଚିଙ୍ଗୁଡି ଚାଷ ପାଇଁ ଲିଜ୍ ନଦେବାକୁ ରାଜସ୍ୱ ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦିଆଯିବା ଉଚିତ (୨) ଚିଲିକାର କୌଣସି ଜାଗାକୁ ମାଛ ଚାଷ ଜାଗା ବୋଲି ଚିହ୍ନିତ ବା ବର୍ଣ୍ଣିତ କରାଯିବା ଉଚିତ ନୁହେଁ । କିନ୍ତୁ ପାରମ୍ପରିକ ମତ୍ସ୍ୟଜୀବୀମାନଙ୍କ ଜୀବନ ଜୀବିକା ପାଇଁ ପାରମ୍ପରିକ ମାଛ ଧରାକୁ ଉତ୍ସାହିତ କରାଯିବା ଆବଶ୍ୟକ । (୩) ଦୀର୍ଘସ୍ଥାୟୀ ସତର୍କତା ମୂଳକ ପଦକ୍ଷେପ ସ୍ୱରୂପ ଏକ ଟାସ୍କ ଫୋର୍ସ ଗଠନ କରାଯିବାର ଆବଶ୍ୟକତା ରହିଛି, ଯାହାକି ସାତପଡା ଏବଂ ବାଲୁଗାଁ ଠାରୁ କାର୍ଯ୍ୟ କରିପାରିବ । (୪) ଚିଲିକା ଚାରିପାଖରେ ଥିବା ଖରୋଇ ଜମିକୁ ଚିଙ୍ଗୁଡି ଚାଷ ପୋଖରୀରେ ପରିବର୍ତ୍ତିତ କରିବାକୁ ହେଉଥିବା ଉଦ୍ୟମକୁ ଓଡ଼ିଶା ଭୂସଂସ୍କାର ଆଇନ୍ ବଳରେ ନିଷେଧ କରାଯିବା ଆବଶ୍ୟକ । (୫) ଚିଲିକାର ମୁହାଣକୁ ସବୁପ୍ରକାର ଅବରୋଧରୁ ମୁକ୍ତ ରଖାଯିବା ଆବଶ୍ୟକ । (୬) ଚିଲିକାର ଗରିବ ଏବଂ ପାରମ୍ପରିକ ମତ୍ସ୍ୟଜୀବୀଙ୍କ ଅଧିକାରର ସୁରକ୍ଷା ଦୃଷ୍ଟିରୁ ଚିଲିକାର ସଂରକ୍ଷଣ ଏବଂ ଉନ୍ନୟନ ପାଇଁ ଏକ ସ୍ୱତନ୍ତ୍ର ଆଇନ୍ ପ୍ରଣୟନ ହେବା ଉଚିତ ।

# ଚିଲିକା ଓ ରାମ୍‌ସର କନ୍‌ଭେନ୍‌ସନ-୧୯୭୧

୧୯୭୧ ମସିହାରେ ଇରାନ୍‌ର କାସ୍ପିୟାନ ହ୍ରଦ କୂଳରେ ଅବସ୍ଥିତ ରାମ୍‌ସର ଠାରେ ଅନୁଷ୍ଠିତ ଆନ୍ତର୍ଜାତୀୟ ସମ୍ମିଳନୀରେ ଯୋଗଦାନ କରିଥିବା ରାଷ୍ଟ୍ରମାନଙ୍କୁ ନିଜ ନିଜ ଦେଶର ଦୁଇଟି ଲେଖାଏଁ ଜଳାଞ୍ଚଳ (Water Body) ର ନାମ ଦେବାକୁ କୁହାଯାଇଥିଲା ଯାହାର କି ଆନ୍ତର୍ଜାତୀୟ ଗୁରୁତ୍ୱ ରହିଥିବ ଏବଂ ଯାହାକୁ ଆନ୍ତର୍ଜାତିକ ମାନ୍ୟତା ଦିଆଯାଇ ସଂରକ୍ଷଣ କରାଯାଇପାରିବ । ଭାରତ, ଯେକି ଏହି କନଭେନ୍‌ସନର ଗୋଟିଏ ସ୍ୱାକ୍ଷରକାରୀ ଦେଶ, ଦୀର୍ଘ ଦଶବର୍ଷ ପରେ ୧୯୮୧ ମସିହାରେ ଏହି କନ୍‌ଭେନ୍‌ସନକୁ ଚିଲିକା ଏବଂ ରାଜସ୍ଥାନର ଭରତପୁର ପକ୍ଷୀ ଅଭୟାରଣ୍ୟର ନାମ ସୁପାରିଶ୍ କରିଥିଲା । ଅର୍ଥାତ୍, ଚିଲିକା ହ୍ରଦକୁ ସଂରକ୍ଷଣ କରିବା ପାଇଁ ଭାରତ ସରକାରଙ୍କର ଏକ ଆନ୍ତର୍ଜାତିକ ଅଙ୍ଗୀକାରବଦ୍ଧତା ରହିଛି ଏବଂ ଜଣାଯାଏ ଏଥିପାଇଁ ଭାରତ ସରକାର ଆନ୍ତର୍ଜାତିକ ପାଣ୍ଠିରୁ ମଧ୍ୟ ଅର୍ଥ ଗ୍ରହଣ କରୁଛନ୍ତି । ଆନ୍ତର୍ଜାତିକ ଚୁକ୍ତିକୁ ସମ୍ମାନ ଦେବା ପାଇଁ ସମ୍ବିଧାନର ୫୧ ଧାରାରେ ସରକାର ଏବଂ ନାଗରିକ ମାନଙ୍କୁ ସ୍ପଷ୍ଟ ନିର୍ଦ୍ଦେଶ ରହିଛି । ଆଉ ଭାରତ ସରକାର ତାଙ୍କର ଏ କର୍ତ୍ତବ୍ୟକୁ କେତେ ନିଷ୍ଠାର ସହିତ ପାଳନ କରୁଛନ୍ତି ତାହା ତ ଚିଲିକାର ମାଫିଆରାଜ ସ୍ପଷ୍ଟ ପ୍ରମାଣିତ କରିଦେଇଛି ।

# ଚିଲିକା ବଞ୍ଚାଅ ଆନ୍ଦୋଳନ

୧୯୮୫ -୮୬ ବେଳକୁ ତତ୍‌କାଳୀନ କଂଗ୍ରେସ ସରକାର ଟାଟା କମ୍ପାନୀକୁ ଚିଲିକାରେ ସଘନ ଚିଙ୍ଗୁଡି ଚାଷ ପାଇଁ ଆମନ୍ତ୍ରଣ କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ବିଜୁ ପଟ୍ଟନାୟକଙ୍କ ଜନତା ଦଳ ସରକାର ମଧ୍ୟ ଟାଟା କମ୍ପାନୀଙ୍କ ଚିଙ୍ଗୁଡି ଚାଷକୁ ସମର୍ଥନ କରିଥିଲେ, ଯଦିଓ କୁହାଯାଏ ଯେ ବିରୋଧୀ ଦଳରେ ଥିବା ବେଳେ ବିଜୁ ପଟ୍ଟନାୟକ ପଣସପଦା ଠାରେ ଏକ ନିର୍ବାଚନୀ ସଭାରେ ଭାଷଣ ଦେଇ ଚିଲିକାର ପାଣି ଛୁଇଁ ଶପଥ କରିଥିଲେ ଯେ ସେ ଚିଲିକାରେ ଟାଟାଙ୍କ ପ୍ରବେଶକୁ ବିରୋଧ କରିବେ । ଟାଟା କମ୍ପାନୀ, ଓଡ଼ିଶା ସରକାର ଏବଂ ଅଟୋଇଣ୍ଡିଆ ନାମକ ଏକ କମ୍ପାନୀର ମିଳିତ ସହଯୋଗରେ ଚିଲିକା ଆକ୍ୱାଟିକ ଫାର୍ମ ଲିମିଟେଡ ନାମକ ଏକ କମ୍ପାନୀ ଗଠନ କରାଯାଇ ଚିଲିକାର ଗମ୍ଭାରୀ ଠାରୁ ଯଦୁପୁର ପର୍ଯ୍ୟନ୍ତ ଅଞ୍ଚଳରେ ୯୫୦ ଏକର ଜମିରେ ପୋଖରୀ ନିର୍ମାଣ ଦ୍ୱାରା ଚିଙ୍ଗୁଡି ଚାଷ ପାଇଁ ପ୍ରସ୍ତୁତି ଆରମ୍ଭ ହୋଇଥିଲା । ଏହା ବିରୋଧରେ ୧୯୯୧ ବେଳକୁ ଚିଲିକା ବାହାରୁ ''ମିଟ୍ ଦି ଷ୍ଟୁଡେଣ୍ଟସ୍'' ନାମରେ କିଛି ଛାତ୍ର ଯାଇ ଚିଲିକାର କେତେକ ଅଞ୍ଚଳର ଲୋକଙ୍କୁ ନେଇ ଏକ ଆନ୍ଦୋଳନ ଛିଡା କରାଇ ଥିଲେ । ପରେ ପରେ ଚିଲିକା ବାହାରୁ ଆଉ କିଛି ନେତା ଓ ପରିବେଶବିତ୍ ଯାଇ ଏଇ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଏହା ସାଧାରଣରେ ''ଚିଲିକା ବଞ୍ଚାଅ ଆନ୍ଦୋଳନ'' ନାମରେ ପରିଚିତ । କାଳକ୍ରମେ ଏଇ ଆନ୍ଦୋଳନର ନେତୃତ୍ୱ ଛାତ୍ରମାନଙ୍କ ହାତରୁ ଯାଇ ଏଇ ନେତାମାନଙ୍କ ହାତରେ ଠୁଳ ହୋଇଥିଲା । ତେବେ ସେ ଯାହାହେଉ, ଏହି ଆନ୍ଦୋଳନର ପ୍ରଭାବରେ ଚିଲିକାରୁ ଟାଟା ହଟିଯିବାକୁ ବାଧ୍ୟ ହୋଇଥିଲା । କିନ୍ତୁ ଟାଟା ହଟିଯିବା ପରେ, ସତେ ଯେମିତି ଛୋଟ ଛୋଟ ଟାଟା ରୂପୀ ଚିଙ୍ଗୁଡି ମାଫିଆମାନେ ଏହି ସୁଯୋଗକୁ ଚାହିଁବସିଥିଲେ, ତା'ପରେ ସେମାନେ ଚିଲିକାରେ ମାତିଗଲେ । ମାତ୍ର ''ଚିଲିକା ବଞ୍ଚାଅ ଆନ୍ଦୋଳନ''ର ନେତାମାନେ ଏଇ ଛୋଟ ଟାଟା ମାନଙ୍କର ବିରୋଧ କରିବା ତ ଦୂରର କଥା, ସେଆଡକୁ ସେମାନଙ୍କର ନଜର ଥିବା ଭଳି ମଧ୍ୟ ମନେହୁଏ ନାହିଁ । ଅବଶ୍ୟ ଏଇଟା କୌଣସି ଆଶ୍ଚର୍ଯ୍ୟର ବିଷୟ ନୁହେଁ

ଯେ ସ୍ଥାନୀୟ ଜନସାଧାରଣଙ୍କ ନିଜ ଭିତରୁ କୌଣସି ନେତୃତ୍ୱ ନଥାଇ, ସେମାନଙ୍କର ବିଶେଷ ସଂପୃକ୍ତି ନଥାଇ ବାହାରୁ ଯାଇ ନେତୃତ୍ୱ ନେବାଦ୍ୱାରା ଯେ କୌଣସି ଆନ୍ଦୋଳନର ଯେଉଁ ଦୁର୍ଦ୍ଦଶା ହୋଇଥାଏ ''ଚିଲିକା ବଞ୍ଚାଅ'' ଆନ୍ଦୋଳନର ମଧ୍ୟ ସେହି ଦୁର୍ଦ୍ଦଶା ହୋଇଥିଲା ।

ପ୍ରଥମେ ଟାଟା ବିରୋଧରେ ଆରମ୍ଭ ହୋଇଥିଲେ ମଧ୍ୟ ''ଚିଲିକା ବଞ୍ଚାଅ'' ଆନ୍ଦୋଳନ ଆସ୍ତେ ଆସ୍ତେ ଏକ ପରିବେଶ ଆନ୍ଦୋଳନରେ ସିମୀତ ହୋଇଗଲା ଏବଂ ଜନସାଧାରଣଙ୍କ ଜୀବନ ଜୀବିକାର ପ୍ରଶ୍ନକୁ ଗୁରୁତ୍ୱ ସହକାରେ ଉତ୍ଥାପନ କରି ନପାରିବାରୁ ଏହା ସାଧାାରଣ ଜନତାଙ୍କ ଠାରୁ କ୍ରମେ ଦୂରେଇ ଯାଇ କେବଳ ଖବର କାଗଜରେ ସୀମିତ ହୋଇ ଗଲା ବୋଲି ମନେ ହୁଏ । ଏଠାରେ ବିଶେଷ ଉଲ୍ଲେଖ ଯୋଗ୍ୟ ଯେ, ''ଚିଲିକା ବଞ୍ଚାଅ ଆନ୍ଦୋଳନ'' ଟାଟା ବିରୋଧରେ ଆନ୍ଦୋଳନ କରିଥିଲେ ମଧ୍ୟ ୧୯୯୧ ମସିହାର ସରକାରୀ ଲିଜ୍ ନୀତି, ଯାହାକି ଚିଲିକାରେ ଚିଙ୍ଗୁଡି ଚାଷକୁ ଆଇନସିଦ୍ଧ କରି ଛୋଟ ଟାଟାମାନଙ୍କୁ ପଶେଇବାକୁ ବାଟ ଫିଟେଇ ଥିଲା, ତାହାକୁ ସକ୍ରିୟ ବିରୋଧ କରି ଥିବାର ନଜିର ନାହିଁ, ଯଦିଓ ବହୁ ମତ୍ସ୍ୟଜୀବୀ ସମବାୟ ସମିତି ସରକାରଙ୍କର ଏହି ଲିଜ୍ ନୀତିକୁ ବିରୋଧକରି ଆଇନଯୁଦ୍ଧ ଆରମ୍ଭ କରିଥିଲେ । ଏହା ହିଁ ଖୁବ ବିସ୍ମୟକର । ଏହି ଦୃଷ୍ଟିରୁ ''ଚିଲିକା ବଞ୍ଚାଅ ଆନ୍ଦୋଳନ'' ଆସ୍ତେ ଆସ୍ତେ ଜନସାଧାରଣଙ୍କ ଠାରୁ ବିଛିନ୍ନ ହୋଇ ନିଜ ଗୋଡରେ ଠିଆ ହୋଇ ନପାରି ପରାଙ୍ଗପୁଷ୍ଟ ହୋଇଯାଇଥିବା ପରି ମନେହୁଏ ।

ମୋଟ ଉପରେ କହିବାକୁ ଗଲେ ଚିଲିକା ବଞ୍ଚାଅ ଆନ୍ଦୋଳନର ଏହିସବୁ ଦୁର୍ବଳତା ଏବଂ ବିଫଳତା ଚିଲିକାରେ ପୋତାଯାଇଥିବା ମାଫିଆ ମଞ୍ଜିରୁ ଗଛ ବାହାରି ତା'ର ମୂଳ ସୁଦୃଢ଼ ହେବା ବିରୁଦ୍ଧରେ ସକ୍ରିୟ ଭୂମିକା ଗ୍ରହଣ କରିପାରି ନଥିଲା ।

## ମତ୍ସ୍ୟଜୀବୀମାନଙ୍କ ନିଜସ୍ୱ ଗଣ ଆନ୍ଦୋଳନ-୧୯୯୭

ଚିଲିକାରେ ମାଫିଆ ରାକ୍ଷସର କ୍ରମ-କାୟା-ବିସ୍ତାର ସାଙ୍ଗକୁ ସମତାଳରେ ମତ୍ସ୍ୟଜୀବୀମାନଙ୍କର ଜୀବନ ଜୀବିକାର କ୍ରମବର୍ଦ୍ଧିଷ୍ଣୁ ଧ୍ୱଂସସାଧନ, ସରକାରୀ ଧୋକାବାଜି, ମାଫିଆମାନଙ୍କୁ ରାଜନୈତିକ ଓ ପ୍ରଶାସନିକ ପୃଷ୍ଠପୋଷକତା, କୋର୍ଟକଚେରୀ ମାନଙ୍କର ଏ ବିଷୟରେ ନିଷ୍କ୍ରିୟତା ଏବଂ କେତେକ କ୍ଷେତ୍ରରେ ପରସ୍ପର ବିରୋଧୀ ରାୟ ଦ୍ୱାରା ଅତିଷ୍ଠ ହୋଇ, ଚିଲିକାର ଚାରିପଟରେ ୧୪୫ ଖଣ୍ଡ ଗାଁ ର ୨ ଲକ୍ଷ ମତ୍ସ୍ୟଜୀବୀ ଆସ୍ତେ ଆସ୍ତେ ''ଚିଲିକା ମତ୍ସ୍ୟଜୀବୀ ମହାସଂଘ'' ଅଧୀନରେ ୧୯୯୭ ମସିହା ବେଳକୁ ଅଧିକରୁ ଅଧିକ ସଂଗଠିତ ହୋଇ ଏହା ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ଲାଗିଲେ । ୧୨.୧୧.୯୬ ତାରିଖର ସୁପ୍ରିମକୋର୍ଟ ଆଦେଶ ପରେ ପରେ ୧୯୯୭ ମସିହା ଜୁଲାଇ ମାସ ବେଳକୁ କେନ୍ଦ୍ର ସରକାରଙ୍କ ତରଫରୁ ଏହି ଆଦେଶକୁ ଅକାମୀ କରିବାକୁ ପ୍ରସ୍ତାବିତ ''ଆକ୍ୱାକଲଚର ଅଥରିଟି ବିଲ୍ '' ଉପରେ ଜନମତ ସଂଗ୍ରହ କରୁଥିବା ପାର୍ଲାମେଣ୍ଟାରୀ ପ୍ରତିନିଧି ଦଳକୁ ୫.୭.୯୭ ରେ ଭେଟି ମତ୍ସ୍ୟଜୀବୀ ମହାସଂଘର କର୍ମକର୍ତ୍ତାମାନେ ଚିଲିକାରେ ଚିଙ୍ଗୁଡିଚାଷ ବିରୋଧରେ ସେମାନଙ୍କର ଦୃଢ଼ ପ୍ରତିବାଦ ଜଣାଇଥିଲେ ।

# କାଳିଜାଈ ଓ ଚିଲିକା ସୁରକ୍ଷା ଅଭିଯାନ

## ୯.୧.୯୮ ରୁ ୧୧.୧.୯୮

ଠିକ୍ ଏଇ ସମୟରେ ଓଡ଼ିଶା ସରକାରଙ୍କ କାଳିଜାଈ ପାହାଡ଼ ବିକ୍ରିକୁ ଅନୁମତି ପ୍ରଦାନ ବୋଝ ଉପରେ ନଳିତା ବିଡ଼ା ଭଳି ମତ୍ସ୍ୟଜୀବୀମାନଙ୍କୁ ଏକ ଅବେଗିକ ଧକ୍କା ଦେଇଥିଲା । ଲୋକ କଥା ଓ କିମ୍ବଦନ୍ତୀ ପ୍ରସିଦ୍ଧ କାଳିଜାଈ ପାହାଡ଼ ଏବଂ କାଳିଜାଈ ଠାକୁରାଣୀ ସହିତ ଆବହମାନ କାଳରୁ ମତ୍ସ୍ୟଜୀବୀ ମାନଙ୍କର ଏକ ଆବେଗିକ ସମ୍ପର୍କ । ମତ୍ସ୍ୟଜୀବୀମାନେ କାଳିଜାଈ ଠାକୁରାଣୀଙ୍କୁ ସେମାନ ତାଙ୍କର ଆରାଧ୍ୟ ଦେବୀ ଭାବରେ ପୂଜା କରିଥାଆନ୍ତି । କାଳିଜାଈ ପାହାଡ଼କୁ, ୧୯୯୭ ସେପ୍ଟେମ୍ବର ମାସରେ ପାରିକୁଦର ପୂର୍ବତନ ଜମିଦାର ପରିବାର ମାତ୍ର ୭୦ ହଜାର ଟଙ୍କାରେ ଭୁବନେଶ୍ୱରର ଏକ ଘରୋଇ କମ୍ପାନୀର ଅଧକ୍ଷା ତଥା ଜଣେ ବରିଷ୍ଠ ପୋଲିସ ଅଫିସରଙ୍କ ସହଧର୍ମିଣୀଙ୍କୁ ଏକ ବିଳାସପୂର୍ଣ୍ଣ ହୋଟେଲ ନିର୍ମାଣ ଉଦ୍ଦେଶ୍ୟରେ ବିକି ଦେଇଥିଲେ । ଏହା ମତ୍ସ୍ୟଜୀବୀମାନଙ୍କ ପାରମ୍ପରିକ ବିଶ୍ୱାସ ଏବଂ ଇଜ୍ଜତକୁ ପ୍ରଚଣ୍ଡ ଧକ୍କା ଦେଇଥିଲା । କାଳିଜାଈ ପାହାଡ଼ ବିକ୍ରି ବିରୋଧରେ ସାରା ରାଜ୍ୟରେ ପ୍ରବଳ ଜନମତ ସୃଷ୍ଟି ହେବା ସହିତ ମତ୍ସ୍ୟଜୀବୀମାନେ ମଧ ଏହା ବିରୋଧରେ ସଂଗଠିତ ହୋଇ ଗଣ ଆନ୍ଦୋଳନ ଆରମ୍ଭ କରିଥିଲେ । ୯.୧.୯୮ ତାରିଖ ଦିନ ପ୍ରାୟ ୭/୮ ହଜାର ମତ୍ସ୍ୟଜୀବୀ ୧୫୮ ଖଣ୍ଡ ନୌକାରେ ଯାଇ କାଳିଜାଈ ପୁନର୍ଦଖଲ ସ୍ମାରକୀ ସ୍ୱରୂପ ପତାକା ପୋତି କାଳିଜାଈ ଦେବୀ ପୀଠର ପବିତ୍ରତା ଫେରାଇ ଆଣିବା ପାଇଁ ମାର୍ଜନା ଯଜ୍ଞ କରିଥିଲେ ଯାହାକି ୪ ଦିନ ପାଇଁ ଚାଲିଥିଲା । ମତ୍ସ୍ୟଜୀବୀମାନଙ୍କର ଏହି କାଳିଜାଈ ଗଣଅଭିଯାନ ଅଧିକାଂଶତଃ ପ୍ରତୀକାତ୍ମକ ଥିଲେ ମଧ ମତ୍ସ୍ୟଜୀବୀମାନେ ଏଇ ଅବସରରେ ସରକାରଙ୍କଠାରେ ସେମାନଙ୍କର ସାଧାରଣ ଦାବି ମାନ ମଧ ଉପସ୍ଥାପନ କରିଥିଲେ । ସେଗୁଡିକ ମଧରେ ମୂଖ୍ୟ ଦାବି ଗୁଡିକ ଥିଲା *(୧) ଚିଲିକାରେ ଚିଙ୍ଗୁଡି ଚାଷକୁ ସମ୍ପୂର୍ଣ୍ଣ ନିଷିଦ୍ଧ କରାଯାଉ । (୨) ଚିଲିକା ହ୍ରଦରେ ମତ୍ସ୍ୟଜୀବୀଙ୍କ ମାଛ ଧରିବା ପାଇଁ ଏକ ଦୀର୍ଘସ୍ଥାୟୀ ଲିଜ୍ ନୀତି କାର୍ଯ୍ୟକାରୀ କରାଯାଉ । (୩) ଚିଲିକା ଭିତରୁ ଏବଂ ଏହାର ସମସ୍ତ ନାଳୀରୁ ବେଆଇନ୍ ଚିଙ୍ଗୁଡି ଘେରି ଭାଙ୍ଗି ଜବର ଦଖଲକାରୀଙ୍କୁ ହଟାଯାଉ । (୪) ଚିଲିକା ମୁହାଣରେ ଜାଆଁଳ ଧରାକୁ ସଂମ୍ପୂର୍ଣ୍ଣ ନିଷିଦ୍ଧ କରାଯାଉ । (୫) ମତ୍ସ୍ୟଜୀବୀମାନଙ୍କୁ ସାମିଲ କରାଯାଇ ଚିଲିକା ହ୍ରଦର ସଂରକ୍ଷଣ ଓ ପରିଚାଳନା ପାଇଁ ଏକ ସ୍ୱୟଂ ଶାସିତ ସଂସ୍ଥା ଗଠନ କରାଯାଉ ଇତ୍ୟାଦି .... ।*

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ପ୍ରବଳ ଜନମତ ଏବଂ ମତ୍ସ୍ୟଜୀବୀମାନଙ୍କ ପ୍ରତିବାଦରେ ରାଜ୍ୟ ସରକାର କାଳିଜାଈ ପାହାଡ଼ ବିକ୍ରିକୁ ବାତିଲ୍ କରିଦେଇଥିଲେ ।

''କାଳିଜାଈ ଓ ଚିଲିକା ସୁରକ୍ଷା ଅଭିଯାନ''ରୁ ମତ୍ସ୍ୟଜୀବୀମାନଙ୍କ ଭିତରେ ସଂଗଠିତ ହେବାର ଏକ ନୂତନ ଆତ୍ମବିଶ୍ୱାସ ଏବଂ ଉନ୍ମାଦନା ଆସିଥିଲା । ତା'ଛଡା ଦିନକୁ ଦିନ ମାଫିଆରାଜର ଦୌରାତ୍ମ୍ୟରେ ନିଜ ଜୀବିକା ହରାଇ ସେମାନଙ୍କ ଭିତରର କ୍ରୋଧ ବି କୁହୁଳିବାରେ ଲାଗିଥିଲା । ବାହାର ନେତୃତ୍ୱର ବିଫଳତା ବି ସେତେବେଳକୁ ସେମାନେ ଅନୁଭବ କରିସାରିଥିଲେ । ଏଣୁ ନିଜସ୍ୱ ନେତୃତ୍ୱରେ ସଂଗଠିତ ହୋଇ ମାଫିଆ ରାଜକୁ ହଟାଇବାକୁ ମତ୍ସ୍ୟଜୀବୀମାନଙ୍କ ଭିତରେ ଏକ ଉଚ୍ଚତର ଆନ୍ଦୋଳନ ଗଢ଼ିଉଠିବାର ସମ୍ଭାବନା '' କାଳିଜାଈ ଓ ଚିଲିକା ସୁରକ୍ଷା ଅଭିଯାନ''ରୁ ସୃଷ୍ଟି ହୋଇଥିଲା ।

# ମତ୍ସ୍ୟଜୀବୀ ବଞ୍ଚାଅ ଆନ୍ଦୋଳନ

## "କର ବା ମର" ଅଭିଯାନ, ମାର୍ଚ୍ଚ, ୧୯୯୯

ପୂର୍ବୋକ୍ତ ସମ୍ଭାବନାକୁ ସାର୍ଥକ କରି ଚିଲିକାର ସାଧାରଣ ମତ୍ସ୍ୟଜୀବୀମାନେ ଚିଲିକା ମତ୍ସ୍ୟଜୀବୀ ମହାସଂଘ ନେତୃତ୍ୱରେ ସଂଗଠିତ ହୋଇ ଚିଲିକାକୁ ଚିଙ୍ଗୁଡ଼ି ମାଫିଆମାନଙ୍କ କବଳରୁ ଉଦ୍ଧାର କରିବାକୁ ୧୯୯୯ ମସିହା ମାର୍ଚ୍ଚ ମାସରେ ପୁଣି ଥରେ ଅଣ୍ଟାଭିଡ଼ି ବାହାରିଲେ । ସରକାରୀ ଅକର୍ମଣ୍ୟତା, ଉଦାସୀନତା ବରଂ ଅଧିକାଂଶ କ୍ଷେତ୍ରରେ ମାଫିଆମାନଙ୍କୁ ସରକାରୀ ଜଙ୍କର ପୃଷ୍ଠପୋଷକତା ଏବଂ ପ୍ରୋତ୍ସାହନ ତଥା ଦିନକୁ ଦିନ ନିଜ ଜୀବନ ଜୀବିକାର ଦୁରବସ୍ଥା ଦ୍ୱାରା ଅତିଷ୍ଠ ହେଉଥିବା ସାଧାରଣ ମତ୍ସ୍ୟଜୀବୀ ପାଇଁ ନିଜ ଜୀବନ ବିପନ୍ନ କରି ନିଜେ ଚିଲିକାରୁ ମାଫିଆମାନଙ୍କୁ ଘଉଡ଼ାଇବା ବ୍ୟତୀତ ଅନ୍ୟ ଉପାୟ ବୋଧହୁଏ ନଥିଲା । ସାଧାରଣ ମତ୍ସ୍ୟଜୀବୀ, ପରିବେଶବିତ୍, ସଚେତନ ନାଗରିକମାନଙ୍କର ନିରନ୍ତର ପ୍ରତିବାଦ, ହାଇକୋର୍ଟ, ସୁପ୍ରିମ୍ କୋର୍ଟଙ୍କର କଡ଼ାକଡ଼ି ଆଦେଶ ସତ୍ତ୍ୱେ ମାଫିଆଙ୍କ ପ୍ରଭାବରେ ପରିଚାଳିତ ନିର୍ଲଜ, ନିକମା ଓଡ଼ିଶା ସରକାର ଚିଲିକା ଉଦ୍ଧାର କାର୍ଯ୍ୟରେ ଯେତେବେଳେ ନିଜକୁ ବାରମ୍ବାର ପଙ୍ଗୁ ପ୍ରମାଣିତ କରି କେବଳ ଫମ୍ପା ପ୍ରତିଶ୍ରୁତିର ଆଢୁଆଳରେ ସାଧାରଣ ମତ୍ସ୍ୟଜୀବୀଙ୍କ ପେଟରେ ଲାତ ମାରି ଚାଲିଲେ, ବରଂ ଅଧିକନ୍ତୁ ଚିଲିକା ଉଦ୍ଧାର ପାଇଁ ନିଯୁକ୍ତ କେତେକ ସରକାରୀ ଅଫିସରଙ୍କୁ ମାଫିଆମାନଙ୍କ ମାରପେଞ୍ଚରେ ୨୪ ଘଣ୍ଟା ଭିତରେ ବଦଳି କରି ଚାଲି ପକେଇଲେ, ସେତେବେଳେ ଆଇନ୍‌କୁ କାର୍ଯ୍ୟକାରୀ କରିବାକୁ ନିଜେ ମତ୍ସ୍ୟଜୀବୀମାନେ ବାହାରି ପଡ଼ିବା ସ୍ୱାଭାବିକ ।

ଏଇ ଚିଲିକା ଉଦ୍ଧାର କାର୍ଯ୍ୟକ୍ରମରେ ମତ୍ସ୍ୟଜୀବୀମାନେ ୨୯.୦୩.୧୯୯୯ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ଉଦ୍ଦେଶ୍ୟରେ ତାଙ୍କର ୯ ଦଫା ସମ୍ବଳିତ ଦାବି ନେଇ ଫାକ୍ସ ଯୋଗେ ଚରମ ପତ୍ର ପଠାଇଥିଲେ । ଏହି ଦାବିଗୁଡ଼ିକ ଥିଲା :-

୧. *ଚିଲିକାରେ ଚିଙ୍ଗୁଡ଼ି ଚାଷକୁ ସମ୍ପୂର୍ଣ୍ଣ ନିଷେଧ କରାଯାଉ ।*

୨. *ମତ୍ସ୍ୟଜୀବୀମାନେ ମାଛ ଧରିବା ପାଇଁ ଏକ ଦୀର୍ଘସ୍ଥାୟୀ ଲିଜ୍ ନୀତି ପ୍ରଣୟନ କରାଯାଉ ।*

୩. *ଚିଲିକା ଭିତରୁ ଏବଂ ଚିଲିକାର ସମସ୍ତ ନାଳୀ ଭିତରୁ ଚିଙ୍ଗୁଡ଼ି ଘେରି ହଟାଯାଉ ।*

୪. *'କେନ୍ଦ୍ରୀୟ ମତ୍ସ୍ୟଜୀବୀ ବାଣିଜ୍ୟିକ ସମବାୟ ସମିତି'ର ରେକର୍ଡ଼ (୧୯୯୧ ମସିହା ସ୍ଥିତି) ଅନୁସାରେ ମତ୍ସ୍ୟଜୀବୀମାନଙ୍କର ସମସ୍ତ ମତ୍ସ୍ୟ ଉତ୍ସ ଗୁଡ଼ିକୁ ଫେରସ୍ତ ଦିଆଯାଉ ।*

୫. *ଚିଙ୍ଗୁଡ଼ି ଜାଆଁଳ ଧରାକୁ ସମ୍ପୂର୍ଣ୍ଣ ନିଷେଧ କରାଯାଉ ।*

୬. *ଚିଲିକା ହ୍ରଦର ସଂରକ୍ଷଣ ଏବଂ ପରିଚାଳନା ପାଇଁ ମତ୍ସ୍ୟଜୀବୀମାନଙ୍କୁ ସାମିଲ୍ କରାଯାଇ ଆଇନ୍‌ଗତ ମାନ୍ୟତା ସହ ଏକ ସ୍ୱୟଂଶାସିତ ସଂସ୍ଥା ଗଠନ କରାଯାଉ ।*

୭. *ଚିଲିକାରେ ଯନ୍ତ୍ରଚାଳିତ ଡଙ୍ଗା ସଂଖ୍ୟା ସୀମିତ କରାଯାଉ ।*

୮. *ଏକ ଦୀର୍ଘସ୍ଥାୟୀ ସମାଧାନ ପାଇଁ ବୈଜ୍ଞାନିକ ପଦ୍ଧତି ଅନୁସରଣ କରାଯାଇ ମଗରମୁଖ ଏବଂ ପାଲୁର କେନାଲ ଖୋଳାଯାଉ ।*

୯. *ବାକିଥିବା ସମସ୍ତ ସରକାରୀ ଦେୟ ଛାଡ଼ କରାଯାଉ ।*

ଉକ୍ତ ଚରମ ପତ୍ରରେ ମତ୍ସ୍ୟଜୀବୀମାନେ ଉଲ୍ଲେଖ କରିଥିଲେ ଯେ ଯଦି ଏପ୍ରିଲ୍ ୧୫ ଭିତରେ ଏଇ ଦାବି ଗୁଡ଼ିକ ପୂରଣ କରାନଯାଏ ତେବେ ସେମାନେ ନିଜେ ନିଜର ପ୍ରତ୍ୟକ୍ଷ ଅଭିଯାନ (Direct Action) ଆରମ୍ଭ କରିବେ । ଏଇ ପତ୍ରର ନକଲ ମଧ୍ୟ ଶିଳ୍ପ ରାଷ୍ଟ୍ରମନ୍ତ୍ରୀ ତଥା ଚିଲିକା ବିଧାୟକ ଶ୍ରୀ ଦେବେନ୍ଦ୍ର ମାନସିଂଙ୍କୁ ଦିଆଯାଇଥିଲା ବୋଲି ଶୁଣାଯାଏ । ଲକ୍ଷ ଲକ୍ଷ ମତ୍ସ୍ୟଜୀବୀଙ୍କ ଦାବି ଉପରେ ସାମାନ୍ୟ ପଦକ୍ଷେପ ତ ଗ୍ରହଣ କରିବା ଦୂରର କଥା, ଏପରିକି ମତ୍ସ୍ୟଜୀବୀମାନଙ୍କୁ ଆଲୋଚନା କରିବା ପାଇଁ ଡାକିବାକୁ ମଧ୍ୟ ସରକାର ଖାତିର୍ କଲେନାହିଁ । ଫଳରେ ମତ୍ସ୍ୟଜୀବୀମାନେ ଅନନ୍ୟୋପାୟ ହୋଇ ପ୍ରତ୍ୟକ୍ଷ ଅଭିଯାନ ଚାଲୁ କରିବାକୁ ୧୭.୦୪.୧୯୯୯ ତାରିଖ ସନ୍ଧ୍ୟାରେ ବରକୂଳ ପାନ୍ଥନିବାସ ଠାରେ ଏକଜୁଟ ହୋଇ ନୌଶିବିର ଆରମ୍ଭ କଲେ । ୧୮.୦୪.୧୯୯୯ ତାରିଖ ସୁଦ୍ଧା ସେଠାରେ ପ୍ରାୟ ୧୫୦ଟି ନୌକାରେ ଆନୁମାନିକ ୨,୦୦୦ ମତ୍ସ୍ୟଜୀବୀ ଏକାଠି ଡେରା ପକାଇଥିଲେ ଯାହାକି ୨୪.୦୪.୧୯୯୯ ତାରିଖ ବେଳକୁ ବୃଦ୍ଧିପାଇ ୩୦୦ ନୌକା ଏବଂ ୩,୦୦୦ ମତ୍ସ୍ୟଜୀବୀରେ ପହଞ୍ଚିଥିଲା ।

ମତ୍ସ୍ୟଜୀବୀମାନେ ଏକାଠି ହେବା ଦେଖି ମାଫିଆମାନଙ୍କ ପୃଷ୍ଠପୋଷକ ସାଜିଥିବା ଆତଙ୍କିତ ପୁରୀ ଏବଂ ଖୋର୍ଦ୍ଧା ପ୍ରଶାସନ ଆଲୋଚନା ପାଇଁ ଆସିଲେ ଏବଂ ମଧୁର ପ୍ରତିଶ୍ରୁତି ଦେଇ କହିଲେ ଯେ ପୁରୀରେ ମେ-୫ ତାରିଖରୁ ଏବଂ ଖୋର୍ଦ୍ଧାରେ ଏପ୍ରିଲ୍-୨୮ ତାରିଖରୁ ଜବରଦଖଲ ମାନ ଉଚ୍ଛେଦ କରାଯିବ । ତେଣୁ, ମତ୍ସ୍ୟଜୀବୀମାନେ ନିଜ ହାତକୁ ଆଇନ୍ ନନିଅନ୍ତୁ । କିନ୍ତୁ ମତ୍ସ୍ୟଜୀବୀମାନେ ଏଇ ମଧୁର ପ୍ରତିଶ୍ରୁତିରେ ଭଳି ନଯାଇ, ତା'ଛଡା ଏମିତି ଏକ ଲମ୍ୱା ତାରିଖ ଦିଆଯାଉଥିବାରୁ ସେଥିରେ ଅସନ୍ତୋଷ ପ୍ରକାଶ କରି ୨୪.୦୪.୧୯୯୯ ତାରିଖରୁ ପ୍ରତ୍ୟକ୍ଷ ଅଭିଯାନ ସ୍ୱରୂପ କୃଷ୍ଣପ୍ରସାଦ ଅଞ୍ଚଳର ପ୍ରାୟ ୧୫୦୦ ଏକର ପରିମିତ ବଡ଼ ବଡ଼ ଚିଙ୍ଗୁଡ଼ି ଘେରି ଗୁଡ଼ିକୁ ଭାଙ୍ଗି ଦେଇଥିଲେ । ଏହା ମଧ୍ୟରେ ପ୍ରଶାସନ ତରଫରୁ ଚଞ୍ଚକତା କରାଯାଇ ପୁରୀ ଜିଲ୍ଲାପାଳ ଆ୍ଲୋଚନା ପାଇଁ ଆସୁଛନ୍ତି ଏବଂ ସେଥିପାଇଁ ଆଇନକୁ ନିଜ ହାତକୁ ନିଅନାହିଁ ବୋଲି କହି ମତ୍ସ୍ୟଜୀବୀମାନଙ୍କୁ ଭୁଆଁ ବୁଲେଇବାକୁ ଚେଷ୍ଟା କରାଯାଇଥିଲା ଏବଂ ଶେଷ ମୁଣ୍ଡରେ ଥିବା ୪ଟା ଡଙ୍ଗା ଏବଂ ୬୭ ଜଣ ମତ୍ସ୍ୟଜୀବୀଙ୍କୁ ଅଟକ ରଖାଯାଇ କୋର୍ଟକୁ ଚାଲାଣ କରାଯାଇଥିଲା । ଡକାୟତି ପ୍ରଭୃତି ଘଟଣାରେ ଜଡ଼ିତ କରି ସେମାନଙ୍କ ବିରୋଧରେ ଆକ୍ରୋଶମୂଳକ ମିଥ୍ୟା ମକଦ୍ଦମାମାନ ରୁଜୁ କରାଗଲା । ଯାହା ହେଉ, ପୁରୀ ଜିଲ୍ଲା ପ୍ରଶାସନ ତରଫରୁ ପ୍ରତିଶ୍ରୁତି ଦିଆଗଲା ଯେ ମେ ୫ ତାରିଖରୁ ପ୍ରଶାସନ ତରଫରୁ ଘେରିଭଙ୍ଗା ଅଭିଯାନ ଆରମ୍ଭ ହେବ ।

ଅଟକ ହୋଇଥିବା ମତ୍ସ୍ୟଜୀବୀ ଏବଂ ନୌକାକୁ ବିନା ସର୍ତ୍ତରେ ଖଲାସ ଦାବିକରି ମହିଳା ଏବଂ ଶିଶୁଙ୍କ ସମେତ ପ୍ରାୟ ୫,୦୦୦ ମତ୍ସ୍ୟଜୀବୀ ୨୭.୦୪.୧୯୯୯ ତାରିଖ ଦିନ ବାଲୁଗାଁଠାରେ ଜାତୀୟ ରାଜପଥକୁ ୫ ଘଣ୍ଟା ଧରି ଅବରୋଧ କରିଥିଲେ । ଉଚ୍ଚ ପୋଲିସ୍ ଅଫିସରଙ୍କ ସହ ଆଲୋଚନା କରି ସମସ୍ୟାର ସମାଧାନ କରାଯିବ ବୋଲି ପ୍ରଶାସନ ତରଫରୁ ପ୍ରତିଶ୍ରୁତି ଦିଆଯିବା ପରେ ଗଣ ଅବରୋଧ ପ୍ରତ୍ୟାହୃତ ହୋଇଥିଲା ।

୨୮.୦୪.୧୯୯୯ ତାରିଖ ଦିନ ଖୋର୍ଦ୍ଧା ପ୍ରଶାସନ ତରଫରୁ ଘେରିଭଙ୍ଗା ଅଭିଯାନ ଆରମ୍ଭ ହୋଇଥିଲା । କିନ୍ତୁ ପ୍ରଭାବଶାଳୀ ଲୋକଙ୍କ ବଡ଼ ବଡ଼ ଘେରି ଗୁଡ଼ିକୁ ସୁରକ୍ଷିତ ରଖାଯାଇ କେବଳ ଛୋଟକାଟର ଘେରିମାନ ଭଙ୍ଗାଯାଇ ଲୋକମାନଙ୍କୁ ଭେଳିକି ଦେଖାଇବାକୁ ଚେଷ୍ଟା କରାଗଲା । ମତ୍ସ୍ୟଜୀବୀମାନେ ଅସନ୍ତୋଷ ପ୍ରକାଶ କରିବାରୁ, ଯେଉଁମାନଙ୍କୁ ଆଇନ୍‌ଗତ ଭାବରେ

ଲିଜ୍ ଦିଆଯାଇଛି, ସେମାନଙ୍କ ଘେରି ଭଙ୍ଗାଯାଇ ପାରିବ ନାହିଁ ବୋଲି କେତେକ ସ୍ଥଳରେ ପ୍ରଶାସନ ତରଫରୁ ସଫେଇ ଦିଆଗଲା । ଖୋର୍ଦ୍ଧା ପ୍ରଶାସନ ପକ୍ଷରୁ ପ୍ରଥମେ ପ୍ରଥମେ ଏଇ ତଥାକଥିତ ଲିଜ୍‌ର ପରିମାଣ ୨୪୦ ଏକର କୁହାଯାଉଥିବା ବେଳେ ପରେ ଏହାକୁ ବଢ଼ାଇ ୫୦୦ ଏକର କୁହାଗଲା ଏବଂ ସେସବୁ ଘେରିକୁ ଭାଙ୍ଗିବାକୁ ଆର୍.ଡି.ସି.ଙ୍କ ପାଖରୁ ଅନୁମତି ଆଣିବାକୁ ହେବ ବୋଲି କୁହାଗଲା । *ଏଠାରେ ପ୍ରଶ୍ନ ଉଠେ ସୁପ୍ରିମ କୋର୍ଟ ତାଙ୍କର ୧୧.୧୨.୯୬ ତାରିଖ ରାୟରେ ଚିଲିକାରେ ଚିଙ୍ଗୁଡ଼ି ଚାଷକୁ ସମ୍ପୂର୍ଣ୍ଣ ନିଷିଦ୍ଧ କରିସାରିଥିବା ବେଳେ କେଉଁ ଆଇନ୍ ବଳରେ ପୁଣି ଚିଲିକାରେ ମାଛ ଚାଷ କରିବାକୁ ଲିଜ୍ ଦିଆଯାଇଥିଲା ? ଜନମତକୁ ବିଭ୍ରାନ୍ତ କରିବାକୁ ''ଆଇନ୍‌ଗତ ଲିଜ୍''ର ଯେଉଁ ହାଓ୍ୱା ସୃଷ୍ଟି କରାଯାଉଛି ସେଇ ତଥାକଥିତ ''ଆଇନଗତ ଲିଜ୍'' କେତେଦୂର ଆଇନ୍ ସିଦ୍ଧ ? ଏହା ତ କେବଳ ବେଆଇନ ନୁହେଁ ବରଂ ସୁପ୍ରିମକୋର୍ଟଙ୍କର ଖୋଲା ଖୋଲି ଅବମାନନା ଦୃଷ୍ଟିରୁ ଦଣ୍ଡନୀୟ ମଧ୍ୟ ।*

ଇତି ମଧ୍ୟରେ ପୁରୀ ଜିଲ୍ଲା ପ୍ରଶାସନ ତରଫରୁ ମେ-୫ ତାରିଖ ଦିନ ବେଆଇନ୍ ଚିଙ୍ଗୁଡ଼ି ଘେରି ଭାଙ୍ଗିବାକୁ ଯାଇଥିବା ବେଳେ ଶାସକ ଦଳର ଜଣେ ପ୍ରଭାବଶାଳୀ ନେତା ତଥା ସ୍ଥାନୀୟ ବିଧାୟକଙ୍କ ନେତୃତ୍ୱରେ ମାଫିଆମାନେ ଏକଜୁଟ୍ ହୋଇ ପ୍ରଶାସନର ସଶସ୍ତ୍ର ବିରୋଧ କରିଥିଲେ ଏବଂ ସେମାନଙ୍କ ବିରୋଧର ସମ୍ମୁଖୀନ ହୋଇ ପ୍ରଶାସନ ସେମାନଙ୍କଠାରେ ଆତ୍ମସମର୍ପଣ କରି ପଛଘୁଞ୍ଚା ଦେଇ ଫେରିଆସିଥିଲେ । ଏଥିରୁ ପୁଣି ଥରେ ସ୍ପଷ୍ଟ ହୋଇଯାଇଥିଲା ଯେ ସମସ୍ତ ଆଇନ୍‌କାନୁନ୍‌କୁ ଉପହାସ କରି ରାଜନୈତିକ ନେତାମାନେ କିଭଳି ନିର୍ଲ୍ଲଜ ଭାବରେ ମାଫିଆମାନଙ୍କୁ କେବଳ ପୃଷ୍ଠପୋଷକତା କରୁନାହାନ୍ତି ବରଂ ଆଉଧାଡ଼ିରେ ରହି ସେମାନଙ୍କୁ ଆଇନ୍‌ର ବିରୋଧ କରିବାକୁ ଉସୁକାଉଛନ୍ତି । କିନ୍ତୁ ବିଡ଼ମ୍ବନାର ବିଷୟ, ଏଭଳି ଏକ ବେଆଇନ୍ କାର୍ଯ୍ୟରେ ଲିପ୍ତ ମୁନାଫାଖୋର୍ ମାଫିଆମାନେ ପ୍ରଶାସନର ସଶସ୍ତ୍ର ବିରୋଧ କରିବା ସତ୍ତ୍ୱେ ପ୍ରଶାସନ ସେମାନଙ୍କ ବିରୋଧରେ କୌଣସି ଆଇନ୍‌ଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲାନାହିଁ । ଅଥଚ ସରକାରଙ୍କ ଉଦାସୀନତା ଏବଂ ଆଇନ୍‌ଭଙ୍ଗକାରୀ ମାଫିଆମାନଙ୍କ ଦ୍ୱାରା ଅତ୍ୟାଚାରିତ ମତ୍ସ୍ୟଜୀବୀମାନେ ଆଇନ୍ ଏବଂ ଦେଶର ସର୍ବୋଚ୍ଚ ନ୍ୟାୟାଳୟର ଆଦେଶକୁ ନିଜ ହାତରେ କାର୍ଯ୍ୟକାରୀ କରୁଥିବା ବେଳେ ଏବଂ ତା'ଦ୍ୱାରା ସମ୍ବିଧାନ ନିର୍ଦ୍ଦେଶିତ ପରିବେଶ ସୁରକ୍ଷା ପାଇଁ ସେମାନଙ୍କ ମୌଳିକ କର୍ତ୍ତବ୍ୟ ସମ୍ପାଦନ କରୁଥିବା ବେଳେ ପ୍ରଶାସନ ତରଫରୁ ସେମାନଙ୍କୁ ମିଛ ଡକାୟତି ମାମଲାରେ ଜଡ଼ିତ କରି ଜେଲ୍ ପଠାଇ ଦିଆଗଲା ।

ପୁଣି ସମ୍ବାଦପତ୍ରମାନଙ୍କରେ ଏହା ମଧ୍ୟରେ କିଛି ବିଭ୍ରାନ୍ତିକର ସମ୍ବାଦ ପ୍ରକାଶିତ କରାଗଲା ଯେ ପ୍ରଶାସନ ଉପସ୍ଥିତିରେ ମାଫିଆ ଏବଂ ମତ୍ସ୍ୟଜୀବୀମାନଙ୍କ ମଧ୍ୟରେ ବୁଝାମଣା ହୋଇଛି । (ସମ୍ବାଦ ୦୭.୦୫.୧୯୯୯, ପ୍ରଜାତନ୍ତ୍ର ୦୮.୦୫.୧୯୯୯) କିନ୍ତୁ ଏଭଳି କୌଣସି ରାଜିନାମା ହୋଇନାହିଁ ବୋଲି ମତ୍ସ୍ୟଜୀବୀ ମହାସଂଘ ତରଫରୁ ଦୃଢ଼ ଭାବରେ ଖଣ୍ଡନ କରାଗଲା (ସମୟ ୧୬.୦୫.୧୯୯୯) ଏପରି ବିଭ୍ରାନ୍ତିମୂଳକ ସମ୍ବାଦମାନଙ୍କରେ ମଧ୍ୟ ସ୍ୱୀକାର କରାଗଲା ଯେ ମାଫିଆମାନେ ବେଆଇନ୍ ଭାବରେ ଚିଲିକାର ମାଛଧରା ଉତ୍ସ ଗୁଡ଼ିକୁ ମାଡ଼ି ବସିଛନ୍ତି । ସେମାନେ ସ୍ୱତଃସ୍ଫୁର୍ତ୍ତ ଭାବରେ ମେ'ରୁ ଜୁନ୍ ୨୦ ତାରିଖ ସୁଦ୍ଧା ଏହି ଜବରଦଖଲ ହଟାଇନେବେ ବୋଲି କହିଲେ । ଏଠାରେ ପ୍ରଶ୍ନ ଉଠେ ନିଜର ମୁନାଫା ପାଇଁ ଲକ୍ଷ ଲକ୍ଷ ମତ୍ସ୍ୟଜୀବୀମାନଙ୍କ ମୁହଁରୁ ଦାନା ଛଡ଼େଇ ନେଉଥିବା ଏବଂ ଅର୍ଥ, ଅସ୍ତ୍ରବଳ ପ୍ରୟୋଗ କରି ଆଇନ୍ ଏବଂ ଅଦାଲତର ଆଦେଶକୁ ଉଲ୍ଲଙ୍ଘନ କରିଚାଲିଥିବା ଏହି ଅପରାଧୀ ମାଫିଆମାନଙ୍କ ସହିତ ପ୍ରଶାସନ କେଉଁ ଆଇନ୍ ବଳରେ ରାଜିନାମା କରିଥିଲେ । ତା'ଛଡ଼ା ମାଫିଆ ଏବଂ ସେମାନଙ୍କର ପୃଷ୍ଠପୋଷକ ନେତାମାନଙ୍କର ସ୍ୱତଃସ୍ଫୁର୍ତ୍ତ ହଟିଯିବାକୁ ପ୍ରତିଶ୍ରୁତି ତ ସ୍ପଷ୍ଟ ଧୋକାବାଜି ବୋଲି ପୂର୍ବରୁ ମଧ୍ୟ କେତେଥର ପ୍ରମାଣିତ ହୋଇ ସାରିଥିଲା ।

# ମତ୍ସ୍ୟଜୀବୀମାନଙ୍କ ପ୍ରତ୍ୟକ୍ଷ ଅଭିଯାନ

## ଦ୍ୱିତୀୟ ପର୍ଯ୍ୟାୟ - ମେ, ୧୯୯୯

ମାଫିଆ ଏବଂ ସେମାନଙ୍କ ପୃଷ୍ଠପୋଷକ ନେତାମାନଙ୍କ ମାରପେଞ୍ଚ ଓ ସରକାରୀ ଧୋକାବାଜିରେ ପୁଣିଥରେ ଶିକାର ହୋଇଥିବା ଅତିଷ୍ଠ ମତ୍ସ୍ୟଜୀବୀମାନେ ୨୯.୦୫.୧୯୯୯ ତାରିଖରୁ ସେମାନଙ୍କର ଦ୍ୱିତୀୟ ପର୍ଯ୍ୟାୟ ପ୍ରତ୍ୟକ୍ଷ ଘେରିଭଙ୍ଗା ଅଭିଯାନ ଆରମ୍ଭ କରିବାକୁ ବାଧ ହୋଇଥିଲେ । ତା'ର ଠିକ୍ ୨୪ ଘଣ୍ଟା ପୂର୍ବରୁ ଭୁବନେଶ୍ୱରଠାରେ ଆୟୋଜିତ ଏକ ଭରାକକ୍ଷ ସାମ୍ବାଦିକ ସମ୍ମିଳନୀରେ ମତ୍ସ୍ୟଜୀବୀମାନେ ପୁଣିଥରେ ସରକାରଙ୍କୁ ଘେରି ଭାଙ୍ଗିବା ପାଇଁ ଚବିଶ ଘଣ୍ଟିଆ ଚରମ ପତ୍ର ଦେଇଥିଲେ । ଏହି ୨୪ ଘଣ୍ଟା ମଧ୍ୟରେ ସରକାରଙ୍କ ତରଫରୁ କୌଣସି ପଦକ୍ଷେପ ନିଆଯାଇ ନଥିଲେ ମଧ୍ୟ ଶେଷ ମୁହୂର୍ତ୍ତରେ, ମତ୍ସ୍ୟଜୀବୀମାନେ ଘେରି ଭାଙ୍ଗିବାକୁ ସଜ ହୋଇ ବାହାରିବା ସମୟରେ ଖୋର୍ଦ୍ଧା ଉପଜିଲ୍ଲାପାଳ ଶ୍ରୀ ବିଶାଳ ଦେବ ସୋରଣ ଠାରେ ମତ୍ସ୍ୟଜୀବୀମାନଙ୍କ ସହ ଆଲୋଚନା କରିବାକୁ ପହଞ୍ଚିଥିଲେ ଏବଂ ୦୧.୦୬.୧୯୯୯ ତାରିଖ ମଙ୍ଗଳବାର ଠାରୁ ଘେରିଭଙ୍ଗା ଅଭିଯାନ ଆରମ୍ଭ ହେବ ବୋଲି କହିଥିଲେ । କିନ୍ତୁ ମତ୍ସ୍ୟଜୀବୀମାନେ ତୁରନ୍ତ ସେଇଦିନଠାରୁ ସରକାରଙ୍କ ତରଫରୁ ଘେରିଭଙ୍ଗା ଅଭିଯାନ ଆରମ୍ଭ ହେଉ ବୋଲି କହିଥିଲେ । ସରକାରୀ ଧୋକାବାଜିର ବାରମ୍ବାର ଶିକାର ହୋଇଥିବା ମତ୍ସ୍ୟଜୀବୀମାନେ କୋଉ ଜୋର୍‌ରେ ବା ପୁନର୍ବାର ସରକାରୀ ପ୍ରତିଶ୍ରୁତିକୁ ବିଶ୍ୱାସ କରିପାରିଥାଆନ୍ତେ । ଫଳରେ ହଜାର ହଜାର ମତ୍ସ୍ୟଜୀବୀ ୨୯.୦୫.୧୯୯୯ ତାରିଖ ଦିନ ସକାଳେ ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ ସୋରଣ ଗାଁର ଘୋଡ଼ାଦୌଡ଼ ପଡ଼ିଆଠାରେ ଏକତ୍ର ହୋଇ ଏକ ସଭା କରି ଘୋଷଣା କରିଥିଲେ ଯେ ସେମାନଙ୍କର ପ୍ରଶାସନ ଉପରେ ଆଉ ବିଶ୍ୱାସ ନାହିଁ ଏବଂ ସେମାନେ ଭୋକରେ ମରିବା ଅପେକ୍ଷା ଚିଙ୍ଗୁଡ଼ି ଘେରିଭଙ୍ଗା ଅଭିଯାନରେ ବରଂ ମାଫିଆ ଏବଂ ପୋଲିସ୍ ଗୁଳିରେ ମରିବା ଶ୍ରେୟସ୍କର । ସେଠାରେ ମତ୍ସ୍ୟଜୀବୀମାନେ ସିଧା ଯାଇ ଖୁବ୍ ଅଳ୍ପ ସମୟ ମଧ୍ୟରେ ଖୋର୍ଦ୍ଧା ଜିଲ୍ଲାର ବରଡ଼ିହି, ନଇରି, ତାରାପି, ବୌଳାବନ୍ଧ ଓ ବାଲିଆ ଇତ୍ୟାଦି ଅଞ୍ଚଳରେ ୧,୦୦୦ ଏକର ଆୟତନର ୧୧ଟି ଘେରିକୁ ଭାଙ୍ଗି ଦେଇଥିଲେ ।

## ମତ୍ସ୍ୟଜୀବୀଙ୍କ ଉପରେ ମାଫିଆ-ପୋଲିସ୍‌ର ମିଳିତ ଅନ୍ଧାରି ଗୁଳିକାଣ୍ଡ

୨୯.୦୫.୧୯୯୯ ଶନିବାର ଦିନ ମତ୍ସ୍ୟଜୀବୀମାନେ ସେମାନଙ୍କର ବେଆଇନ୍ ଘେରିଭଙ୍ଗା ଅଭିଯାନ ଶେଷକଲା ପରେ ଖୋର୍ଦ୍ଧା ଜିଲ୍ଲାର ସୋରଣ ଗ୍ରାମଠାରେ ଏକତ୍ରିତ ହୋଇ ରବିବାର ପାଇଁ କାର୍ଯ୍ୟକ୍ରମ ସ୍ଥିର କରି ନୈଶିବିରରେ ଆଶ୍ରୟ ନେଇଥିଲେ । ସେମାନଙ୍କର ନେତୃବୃନ୍ଦ ନିକଟବର୍ତ୍ତୀ ଘୋଡ଼ାଦୌଡ଼ ପଡ଼ିଆଠାରେ ଗୋଟିଏ ଘରେ ଶୋଇବାକୁ ଯାଇଥିଲେ । ସେଦିନ ରାତି ୧୨ଟା ପରେ ମତ୍ସ୍ୟଜୀବୀ ଏବଂ ତାଙ୍କର ନେତୃବୃନ୍ଦ ନିଘୋଡ଼ ନିଦରେ ଶୋଇଥିବା ବେଳେ ଖୋର୍ଦ୍ଧାର ଜିଲ୍ଲାପାଳ ସର୍ବେଶ୍ୱର ମହାନ୍ତି ଏବଂ ଏସ୍.ପି. ଶ୍ୟାମ ହାଂସଦା ୨ଟି ଭ୍ୟାନ୍ ବୋଝେଇ ସଶସ୍ତ୍ର ପୋଲିସ୍ ସହିତ ସେଠାରେ ପହଞ୍ଚି ମତ୍ସ୍ୟଜୀବୀମାନଙ୍କ ନେତୃବୃନ୍ଦଙ୍କୁ ଜୋରଜବରଦସ୍ତି ନିଦରୁ ଉଠେଇ ଆଣିବାକୁ ଚେଷ୍ଟା କରିଥିଲେ । ସେମାନଙ୍କୁ ଜୋରଜବରଦସ୍ତି ଧକ୍‌କା ଦେଇ, ବିଧା ଗୋଇଠା ଏବଂ ଲାଠିମାଡ଼ ଦେଇ ପୋଲିସ୍ ଭ୍ୟାନ୍ ଭିତରେ ପୂରେଇ ଦିଆଯାଇଥିଲା ।

ଏହି ଖବର ଆଖପାଖରେ ଶୋଇଥିବା ମତ୍ସ୍ୟଜୀବୀମାନଙ୍କ ମଧ୍ୟରେ ପ୍ରଚାରିତ ହୋଇଯିବା ମାତ୍ରେ ସେମାନେ ଏକତ୍ରିତ ହୋଇ ଭୟାନକ ରାସ୍ତା ଅବରୋଧ କରିଥିଲେ । ପୋଲିସ୍ ସେମାନଙ୍କ ଉପରେ ଲାଠିଚାଳନା କରି ସେମାନଙ୍କୁ ହଟେଇ ୨୦ ଜଣ ନେତୃସ୍ଥାନୀୟ ମତ୍ସ୍ୟଜୀବୀଙ୍କୁ ଉଠେଇ ନେଇ ଚାଲିଯାଇଥିଲେ । ସେତେବେଳକୁ ଏ ଖବର ଆଖପାଖର ମତ୍ସ୍ୟଜୀବୀ ଗାଆଁମାନଙ୍କୁ ପ୍ରସାରିତ ହୋଇଯାଇଥିବାରୁ ଶତାଧିକ ମତ୍ସ୍ୟଜୀବୀ ମହିଳା ଏକଜୁଟ୍ ହୋଇ ପଥରୋଧ କରିଥିଲେ । ଅନ୍ୟ ସାହିମାନଙ୍କରୁ ମତ୍ସ୍ୟଜୀବୀମାନେ ମଧ୍ୟ ସେଠାରେ ଏକଜୁଟ୍ ହୋଇଥିଲେ । ପୋଲିସ୍ ସେମାନଙ୍କ ଉପରେ ପ୍ରଥମେ ଲାଠିଚାର୍ଜ, ପରେ ଲୁହବୁହା ଗ୍ୟାସ୍ ପ୍ରୟୋଗ କରିବା ପରେ ବର୍ବରୋଚିତ ଭାବରେ ଗୁଳିଚାଳନା କରିବା ଆରମ୍ଭ କରିଦେଇଥିଲେ । ପୋଲିସ୍ ଗୁଳିରେ ବାଞ୍ଛାନିଧି ବେହେରା ନାମକ ଜଣେ ମତ୍ସ୍ୟଜୀବୀ ଘଟଣାସ୍ଥଳରେ ଶହୀଦ ହୋଇଯାଇଥିଲେ ଏବଂ ପ୍ରମିଳା ବେହେରା (୩୮) ନାମ୍ନୀ ଜଣେ ମହିଳା ଏବଂ ଦିଗମ୍ବର ବେହେରା (୩୭) ଗୁରୁତର ଭାବରେ ଆହତ ହୋଇ ଭୁବନେଶ୍ୱର କ୍ୟାପିଟାଲ ହସ୍‌ପିଟାଲ୍‌ରେ ଶହୀଦ୍ ହୋଇଥିଲେ । ପୋଲିସ୍ ଲାଠିମାଡ଼ ଏବଂ ଗୁଳିମାଡ଼ରେ ଶୁକଦେବ ବେହେରା, ଅଭୟ ବେହେରା, ଗୋପୀନାଥ ବେହେରା, ଇନ୍ଦ୍ରମଣି ବେହେରା, ଲିଙ୍ଗରାଜ ବେହେରା, ସଅଁବାରୀ ବେହେରା, ତ୍ରିନାଥ ବେହେରା, ରବି ବେହେରା, ସର୍ଜନ ବେହେରା, ସତ୍ୟ ମଲିକ, ଆନନ୍ଦ ମଲିକ ଏବଂ ମହିଳାମାନଙ୍କ ଭିତରୁ ନଳିନୀ ବେହେରା, ସୁନ୍ଦରୀ ବେହେରା, ପଦୀ ବେହେରା, ପାର୍ବତୀ ବେହେରା ଓ ସାଧନା ବେହେରା ପ୍ରଭୃତି ଗୁରୁତର ଆହତ ହୋଇଥିଲେ । ପ୍ରମିଳା ବେହେରାଙ୍କୁ ସୁରକ୍ଷା ଦେବାକୁ ଯାଇ ରାଧା ବେହେରା ନାମ୍ନୀ ମହିଳା ଜଣକ ପୋଲିସ୍ ମାଡ଼ରେ ଗୁରୁତର ଆହତ ହୋଇ ନିଖୋଜ ହୋଇଯାଇଥିଲେ । ପୋଲିସ୍‌ର ଲୁହବୁହା ଗ୍ୟାସ୍ ପ୍ରୟୋଗ ବେଳେ ମାଧବ ବେହେରାଙ୍କର ଘର ପୋଡ଼ି ଛାରଖାର ହୋଇଯାଇଥିଲା । କୁହୁଡ଼ିଠାରୁ ସୋରଣ ପର୍ଯ୍ୟନ୍ତ ରାସ୍ତା ପୋଲିସ୍ ଅବରୋଧ କରି ରଖିଥିବାରୁ ଆହତ ମତ୍ସ୍ୟଜୀବୀମାନଙ୍କୁ ଚିକିତ୍ସା ପାଇଁ ମଧ୍ୟ ଡାକ୍ତରଖାନାକୁ ଅଣାଯାଇ ପାରିନଥିଲା । ବାଧ୍ୟ ହୋଇ ମତ୍ସ୍ୟଜୀବୀମାନେ ଡଙ୍ଗାଯୋଗେ ସେମାନଙ୍କୁ କାଳୁପଡ଼ା ଘାଟଯାକେ ଆଣି ସେଠାରୁ ଟ୍ରେକର ଯୋଗେ ଭୁବନେଶ୍ୱରର କ୍ୟାପିଟାଲ୍ ହସ୍‌ପିଟାଲ୍‌କୁ ନେଇଥିଲେ । ସେଠାରେ ମଧ୍ୟ ପୋଲିସ୍ ଆହତ ମତ୍ସ୍ୟଜୀବୀ ଏବଂ ସେମାନଙ୍କର ସମ୍ପର୍କୀୟମାନଙ୍କୁ ଅଟକ କରିବାକୁ ପଛେଇ ନଥିଲା । ରାଜଧାନୀ ହସ୍‌ପିଟାଲ୍‌ରେ ଆହତମାନଙ୍କ ମଧ୍ୟରୁ ଗୋପୀ ବେହେରା (୨୪ ବର୍ଷ), ସୁଦର୍ଶନ ବେହେରା (୩୦ ବର୍ଷ), ଲିଙ୍ଗରାଜ ବେହେରା (୨୩ ବର୍ଷ), ଇନ୍ଦ୍ରମଣି ବେହେରା (୩୩ ବର୍ଷ) ଦାମୋଦର ବେହେରା (୫୫ ବର୍ଷ), ଅଭୟ ବେହେରା (୧୬ ବର୍ଷ)ଙ୍କର ଅବସ୍ଥା ଗୁରୁତର ହେବାରୁ ସେମାନଙ୍କୁ କଟକ ବଡ଼ଡାକ୍ତରଖାନାକୁ ସ୍ଥାନାନ୍ତର କରାଗଲା । ସେଠାରେ ଜୁନ୍ ୪, ୧୯୯୯ ଦିନ ସୁଦର୍ଶନ ବେହେରା ଶହୀଦ୍ ହୋଇଗଲେ ।

## ସୋରଣ ଗୁଳିକାଣ୍ଡରେ ଶହୀଦ ମତ୍ସ୍ୟଜୀବୀ

୧. ବାଞ୍ଛାନିଧି ବେହେରା (୩୮ ବର୍ଷ)
୨. ପ୍ରମିଳା ବେହେରା (୩୮ ବର୍ଷ)
୩. ଦିଗମ୍ବର ବେହେରା (୩୭ ବର୍ଷ)
୪. ସୁଦର୍ଶନ ବେହେରା (୩୦ ବର୍ଷ)

# ବର୍ବର ଆକ୍ରମଣ ଉପରେ ସରକାରୀ ଓ ସାଧାରଣ ପ୍ରତିକ୍ରିୟା

ଚିରାଚରିତ ପ୍ରକ୍ରିୟାରେ ଏବଂ ପ୍ରତ୍ୟାଶିତ ଭାବରେ ରାଜ୍ୟ ପୋଲିସ୍ ମୁଖ୍ୟ କାର୍ଯ୍ୟାଳୟ ତରଫରୁ ଗୁଳିକାଣ୍ଡ ଉପରେ ସ୍ପଷ୍ଟୀକରଣ ଦିଆଯାଇ କୁହାଯାଇଥିଲା ଯେ ମାଜିଷ୍ଟ୍ରେଟ୍ ଏବଂ ପୋଲିସ୍‌ର ଆଦେଶ ଅମାନ୍ୟ କରିଥିବାରୁ ମତ୍ସ୍ୟଜୀବୀମାନଙ୍କ ନେତୃବୃନ୍ଦଙ୍କୁ ଗିରଫ କରିବାକୁ ପୋଲିସ୍ ଯାଇଥିଲା ଏବଂ ସେ ସମୟରେ ମତ୍ସ୍ୟଜୀବୀମାନେ ସଙ୍ଗଠିତ ହୋଇ ପୋଲିସ୍ ଉପରକୁ ଟେକାପଥର ମାଡ଼ କରିବାରୁ ଆତ୍ମରକ୍ଷା କରିବାକୁ ପୋଲିସ୍‌କୁ ଗୁଳି ଚଳେଇବାକୁ ପଡ଼ିଥିଲା ।

ଏ ପାଖରେ କିନ୍ତୁ ରାଜ୍ୟ ମୁଖ୍ୟମନ୍ତ୍ରୀ କହିଲେ, '' ସବୁକିଛି ଅନ୍ଧାରରେ ଘଟିଗଲା ଏବଂ ମୋତେ ବି ଅନ୍ଧାରରେ ରଖାଯାଇଥିଲା'' ( ସମ୍ବାଦପତ୍ର ରିପୋର୍ଟ ) । ରାଜ୍ୟ ଘରୋଇ ରାଷ୍ଟ୍ରମନ୍ତ୍ରୀ କହିଲେ ଯେ, ''ଏହା ଏକ ସରକାରୀ ବିଫଳତା ।'' ପଛକୁ ପଛ ରାଜ୍ୟ ପୋଲିସ୍ ମୁଖ୍ୟ କହିଲେ ଯେ ଗୁଳି ଚାଳନା ବିଷୟରେ ଜିଲ୍ଲାପାଳ ଏବଂ ଏସ୍.ପି. ମିଳିମିଶି ନିଷ୍ପତ୍ତି ନେଇଥିଲେ, ଅର୍ଥାତ୍ ସେମାନେ ଏ ବିଷୟରେ ଉପରବାଲାଙ୍କୁ ପଚାରିନଥିଲେ । ପ୍ରତ୍ୟାଶିତ ପ୍ରବଳ ଜନପ୍ରତିକ୍ରିୟା ଉପରେ ପାଣି ଛିଞ୍ଚିବାକୁ ରାଜ୍ୟ ସରକାର ତୁରନ୍ତ ଗୁଳିକାଣ୍ଡ ଘଟଣାର ବିଚାର ବିଭାଗୀୟ ତଦନ୍ତ ପାଇଁ ନିର୍ଦ୍ଦେଶ ଦେଲେ ଏବଂ ପରେ ହାଇକୋର୍ଟର କାର୍ଯ୍ୟରତ ବିଚାରପତି ଶ୍ରୀ ପି. କେ. ତ୍ରିପାଠୀ ଏହି ତଦନ୍ତ କରିବେ ବୋଲି ଘୋଷଣା କରାଯାଇଛି । ତା' ପୂର୍ବରୁ ସରକାରୀ ନିର୍ଦ୍ଦେଶରେ ରାଜସ୍ୱ କମିଶନର ଘଟଣାର ପ୍ରାଥମିକ ତଦନ୍ତ କରି ଗୁଳିକାଣ୍ଡ ଏବଂ ତା'ଦ୍ୱାରା ମତ୍ସ୍ୟଜୀବୀମାନଙ୍କର ମର୍ମନ୍ତୁଦ ମୃତ୍ୟୁପାଇଁ ସମ୍ପୂର୍ଣ୍ଣ ଭାବରେ ଜିଲ୍ଲାପାଳ ଶ୍ରୀ ସର୍ବେଶ୍ୱର ମହାନ୍ତି ଏବଂ ଏସ୍.ପି. ଶ୍ୟାମ ହାଂସ୍‌ଦାଙ୍କୁ ଦାୟୀ କରିଛନ୍ତି । ଏହି ରିପୋର୍ଟ ଭିତ୍ତିରେ ରାଜ୍ୟ ସରକାର, ଜିଲ୍ଲାପାଳ ଓ ଏସ୍.ପି.ଙ୍କ ସମେତ ଛ'ଜଣ ଅଫିସର୍‌ଙ୍କୁ ସସ୍‌ପେଣ୍ଡ କରିଛନ୍ତି । ରାଜସ୍ୱମନ୍ତ୍ରୀଙ୍କ ନେତୃତ୍ୱରେ ତିନିଜଣିଆ ମନ୍ତ୍ରିସ୍ତରୀୟ କମିଟି ସୋରଣ ଗ୍ରାମକୁ ୩୦.୦୫.୧୯୯୯ ଦିନ ସରଜମିନ୍ ତଦନ୍ତ ପାଇଁ ଯାଇଥିଲେ, ଯାହାକୁ କି ମତ୍ସ୍ୟଜୀବୀମାନେ ପ୍ରାଥମିକ ସ୍ତରରେ ତୀବ୍ର ବିରୋଧ କରିଥିଲେ ଏବଂ ପରେ ବୁଝାଶୁଝା କରିବା ପରେ ସେମାନଙ୍କୁ ଗାଁ ଭିତରକୁ ପଶିବାକୁ ଅନୁମତି ଦିଆଯାଇଥିଲା । ତା' ମଧ୍ୟରେ ସରକାରଙ୍କ ତରଫରୁ ଘୋଷଣା କରାଯାଇଛି ଯେ ଚିଲିକାକୁ ଖୁବ୍ ଶୀଘ୍ର ଘେରିମୁକ୍ତ କରାଯିବ । ଏମିତିକି ଘରୋଇ ରାଷ୍ଟ୍ରମନ୍ତ୍ରୀ ସୋରଣଠାରେ ଖୁବ୍ ଆବେଗପୂର୍ଣ୍ଣ ଭାବରେ ଘୋଷଣା କଲେ ଯେ ୭ ଦିନ ମଧ୍ୟରେ ଚିଲିକାକୁ ଘେରିମୁକ୍ତ କରି ନପାରିଲେ ସେ ମନ୍ତ୍ରୀ ଏବଂ ବିଧାୟକ ପଦରୁ ଇସ୍ତଫା ଦେବେ । ବିଭିନ୍ନ ରାଜନୈତିକ ଦଳ ଓ ଗଣ ସଂଗଠନର ନେତୃବୃନ୍ଦ ସୋରଣ ଅଞ୍ଚଳ ମଧ୍ୟ ପରିଦର୍ଶନ କଲେ, ଏବଂ ଏଭଳି ବର୍ବରୋଚିତ ଆକ୍ରମଣକୁ ନିନ୍ଦା କଲେ ।

ଚିଲିକା ମତ୍ସ୍ୟଜୀବୀ ମହାସଂଘ ତରଫରୁ ତୁରନ୍ତ ସଭା ଆହ୍ୱାନ କରାଯାଇ ଦୃଢ଼ ନିଷ୍ପତ୍ତି ନିଆଗଲା ଯେ, ୪ ଜଣଙ୍କ ସ୍ଥାନରେ ୪ ହଜାର ଜୀବନ ଦେବାକୁ ପଡ଼ିଲେ ମଧ୍ୟ ମତ୍ସ୍ୟଜୀବୀମାନଙ୍କ ତରଫରୁ ଚିଲିକାକୁ ଯେ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଘେରିମୁକ୍ତ କରାନଯାଇଛି, ସେପର୍ଯ୍ୟନ୍ତ ସେମାନଙ୍କର ''କର ବା ମର'' ଅଭିଯାନ ଚାଲୁ ରହିବ ଏବଂ ଏହି କାର୍ଯ୍ୟକ୍ରମ ଶହୀଦ ମତ୍ସ୍ୟଜୀବୀମାନଙ୍କ ଶୁଦ୍ଧିକ୍ରିୟା ପରେ ପୁଣିଥରେ ଆରମ୍ଭ ହେବ । ଶହୀଦମାନଙ୍କ ସ୍ମୃତିରେ ସୋରଣଠାରେ ସ୍ମୃତିସ୍ତମ୍ଭ କରାଯିବାକୁ ମତ୍ସ୍ୟଜୀବୀମାନଙ୍କ ତରଫରୁ ନିଷ୍ପତ୍ତି ନିଆଗଲା । ତା'ଛଡ଼ା ମତ୍ସ୍ୟଜୀବୀ ମହାସଂଘ ତରଫରୁ ମଧ୍ୟ ଜୁନ୍ ୫ ତାରିଖ ଦିନ ୧୨ ଘଣ୍ଟିଆ ଓଡ଼ିଶା ବନ୍ଦ ଡାକରା ଦିଆଯାଇଥିଲା ଯାହାକୁ କି ରାଜ୍ୟର ସମସ୍ତ ବାମପନ୍ଥୀ ଦଳ ସମର୍ଥନ ଜଣାଇଥିଲେ ।

# ଅନ୍ଧାରି ଆକ୍ରମଣର ଅନ୍ଧାରି ଦିଗ

ଏପରିକି ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କ ସ୍ୱୀକାରୋକ୍ତି ଅନୁସାରେ ତାଙ୍କୁ ବି ଅନ୍ଧାରରେ ରଖି ନିଶୂନ ରାତି ଅନ୍ଧାରରେ ନିଜର ଜୀବନ ଜୀବିକା ପାଇଁ ଲଢ଼େଇ କରୁଥିବା ନିଦ୍ରାଗତ ନିରୀହ ମତ୍ସ୍ୟଜୀବୀମାନଙ୍କ ଉପରେ ଆୟୋଜିତ ଆଦିମ, ଅନ୍ଧାରି ଆକ୍ରମଣର ଅନ୍ଧାରି ଉଦ୍ଦେଶ୍ୟ ଉପରେ ଏବେ ବିଭିନ୍ନ ଦିଗରୁ ଆଲୋକପାତ ହେବା ଆରମ୍ଭ ହୋଇଛି । ଏକଥା ତ ''ବାଣ୍ଡରେ ପଡ଼ି ହାଟରେ ଗଡ଼ାଗଡ଼ି'' ଯେ ଉଚ୍ଚ ପ୍ରଶାସକ, ରାଜନୈତିକ ନେତା, ମନ୍ତ୍ରୀ ଓ ବିଧାୟକମାନେ ଚିଲିକାରେ ବେନାମୀ ଭାବରେ ଲିଜ୍ ନେଇ ଚିଙ୍ଗୁଡ଼ି ଚାଷ କରୁଛନ୍ତି କିମ୍ବା ସେମାନଙ୍କ ସମ୍ପର୍କୀୟ, ସମର୍ଥକମାନେ ଏଥିରେ ସମ୍ପୃକ୍ତ ଅଛନ୍ତି । ଏହି ''ଧରମବୋପା''ମାନଙ୍କ ଇଙ୍ଗିତରେ ପରିଚାଳିତ ହୋଇ ପୋଲିସ୍ ପ୍ରଶାସନ ଆଗରୁ ଚିଙ୍ଗୁଡ଼ି ମାଫିଆମାନଙ୍କୁ ଘଣ୍ଟ ଘୋଡ଼ାଇ ରଖି ଆସିଛି ଏବଂ ଏଥର ସେମାନେ, ମତ୍ସ୍ୟଜୀବୀମାନଙ୍କ ଘେରିଭଙ୍ଗା ଅଭିଯାନରେ ସଦ୍ୟ କ୍ଷତିଗ୍ରସ୍ତ ହୋଇବାରୁ ସେଇମାନଙ୍କ ଇଙ୍ଗିତରେ ଯେ ଏଭଳି ରକ୍ତମୁଖା ହୋଇଛନ୍ତି ଏକଥା ନିଃସନ୍ଦେହ । ସୋରଣ ଗୁଳିକାଣ୍ଡର ଘଟଣାକ୍ରମକୁ ବିଶ୍ଳେଷଣ କଲେ ଏହା ପୁଣିଥରେ ସ୍ପଷ୍ଟ ହୋଇଯାଏ ।

ରାଜ୍ୟ ପୋଲିସ୍ ମୁଖ୍ୟ ସଫେଇ ଦେଇଛନ୍ତି ଯେ ୩୦.୦୫.୧୯୯୯ ତାରିଖ ଦିନ ମତ୍ସ୍ୟଜୀବୀମାନେ ପୁଣି ଘେରିଭଙ୍ଗା ପାଇଁ ସଜବାଜ ହେଉଥିବାରୁ ମାଫିଆମାନଙ୍କ ତରଫରୁ ସେମାନଙ୍କ ଉପରେ ଆକ୍ରମଣର ଆଶଙ୍କା କରାଯାଉଥିଲା । ଏଣୁ ଏପରି ଏକ ଅପ୍ରୀତିକର ପରିସ୍ଥିତିକୁ ଏଡ଼ାଇବା ପାଇଁ ପ୍ରତିଷେଧକ ମୂଳକ ବ୍ୟବସ୍ଥା ସ୍ୱରୂପ ମତ୍ସ୍ୟଜୀବୀ ନେତାମାନଙ୍କୁ ଗିରଫ କରିବାର ନିଷ୍ପତ୍ତି ନିଆଯାଇଥିଲା । ପୁଣି ପୋଲିସ୍ ଏବଂ ମାଜିଷ୍ଟ୍ରେଟ୍‌ଙ୍କ ଆଦେଶର ଅବମାନନା ଅପରାଧରେ ସେମାନଙ୍କୁ ଗିରଫ କରାଯାଇଥିଲା ବୋଲି ପୋଲିସ୍ ମୁଖ୍ୟ ବୟାନ ଦେଇଛନ୍ତି । ''ଯାହାବି ହେଉ ମତ୍ସ୍ୟଜୀବୀମାନେ ଆଇନ୍‌କୁ ହାତକୁ ନେବା ଉଚିତ ନଥିଲା'' ବୋଲି ତାଙ୍କର ଖେଦୋକ୍ତି । ଏ ସମ୍ବନ୍ଧରେ କେତୋଟି ପ୍ରଶ୍ନ ଉତ୍ଥାପନ କରାଯାଇପାରେ :-

(କ) ଯଦି ୨୯.୦୫.୧୯୯୯ ତାରିଖ ଦିନ ଘେରିଭଙ୍ଗା ବେଳେ କୌଣସି ଗଣ୍ଡଗୋଳ ହୋଇନଥିଲା, ତେବେ ୩୦.୦୫.୧୯୯୯ ତାରିଖ ଦିନ ପୋଲିସ୍ ଗଣ୍ଡଗୋଳର ଆଶଙ୍କା କଲେ କାହିଁକି ? ଏମିତି ବି ତ ନୁହେଁ ଯେ ମତ୍ସ୍ୟଜୀବୀମାନେ ହଠାତ୍ କିମ୍ବା ଲୁଚିଛପି ୨୯.୦୫.୧୯୯୯ ତାରିଖ ଦିନ ଘେରି ଭାଙ୍ଗିଥିଲେ ଯାହା ଫଳରେ କି ମାଫିଆ ସେଦିନ ପାଇଁ ପ୍ରସ୍ତୁତ ନଥିଲେ ଏବଂ ୩୦.୦୫.୧୯୯୯ ତାରିଖ ପାଇଁ ପ୍ରସ୍ତୁତ ରହିଥିଲେ ।

(ଖ) ପୋଲିସ୍ ଯଦି ୩୦.୦୫.୧୯୯୯ ତାରିଖରେ ଗଣ୍ଡଗୋଳର ଆଶଙ୍କା କରୁଥିଲେ, ତେବେ ନିଶ୍ଚିତ ଭାବରେ ମାଫିଆମାନଙ୍କ ତରଫରୁ ଆକ୍ରମଣର ସୂଚନା ପାଇଥିବେ । କାରଣ ମତ୍ସ୍ୟଜୀବୀମାନେ ତ ମାସେ ଧରି ତାଙ୍କର ଅଭିଯାନ ଜାରି ରଖିଥିଲେ । ତେବେ ଗଣ୍ଡଗୋଳ ଏଡ଼େଇବାକୁ ମାଫିଆମାନଙ୍କୁ ତ ପ୍ରଥମେ ଗିରଫ କରିବା କଥା । ତାହା କରାଯାଇଥିଲା କି ? କେବଳ ମତ୍ସ୍ୟଜୀବୀମାନେ ଆଇନ୍‌ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରିବେ ବୋଲି ପୋଲିସ୍ କେଉଁ ଯୁକ୍ତିରେ ଚିନ୍ତାକଲା ? ନା, ପାରମ୍ପରିକ ଭାବରେ ମାଫିଆମାନଙ୍କ ଧରମଭାଇ ପାଲଟିଥିବା ପୋଲିସ୍‌ର ମତ୍ସ୍ୟଜୀବୀମାନଙ୍କ ବିରୋଧରେ, କେବଳ ସେମାନେ ହିଁ ଗଣ୍ଡଗୋଳକାରୀ ବୋଲି ଏକ ବଦ୍ଧମୂଳ ମାନସିକତା ସୃଷ୍ଟି ହୋଇଥିଲା ?

(ଗ) ମାଜିଷ୍ଟ୍ରେଟ ଏବଂ ଏସ୍.ପି.ଙ୍କ ଆଦେଶର ମହିମା ବୁଝେଇବାକୁ ଯଦି ପୋଲିସ୍‌ର ଏତେ ଅହଂକାର, ତେବେ ମାଜିଷ୍ଟ୍ରେଟ୍ ଏବଂ ଏସ୍.ପି. ମହାଶୟ ତାଙ୍କ ପ୍ରଭୁତ୍ୱ ଏବଂ ଆଦେଶର ମହତ୍ତ୍ୱ ଏତେବର୍ଷ ଧରି ସମସ୍ତ ଆଇନ୍ କାନୁନ୍, ବିଧାନସଭା ଗୃହ କମିଟିର ସୁପାରିଶ୍, କୋର୍ଟର ଆଦେଶକୁ ଉପହାସ କରୁଥିବା ମାଫିଆମାନଙ୍କ ଉପରେ ଥରେ ବି ଜାହିର କରିପାରିଲେ ନାହିଁ କାହିଁକି ? ତେବେ ସିନା ମାଜିଷ୍ଟ୍ରେଟ୍ କି ଏସ୍.ପି. ଆଦେଶର ଓଜନଟା ଠିକ୍ ଜଣାପଡ଼ି ଥାଆନ୍ତା । ମେ ମାସ ୫ ତାରିଖ ଦିନ ସଦଳବଳେ ଘେରି ଭାଙ୍ଗିବାକୁ ଯାଇଥିବା ମାଜିଷ୍ଟ୍ରଟ୍‌ମାନେ, ମାଫିଆମାନେ ଛିଙ୍କିଦେଲେ ଛତ୍ରଭଙ୍ଗ ଦେଇ ଫେରିଆସିଥିଲେ କାହିଁକି ? ସେତେବେଳକୁ ବୋଧହୁଏ ମାଜିଷ୍ଟ୍ରେଟମାନଙ୍କର ୨୪ ଘଣ୍ଟିଆ ବଦଳିର ଭୟ । ଖାଲି କଣ କୁଜି ଅସରପା ଉପରେ କାଣୀ ବିଲେଇର ମାଜିଷ୍ଟ୍ରେଟୀ ଚଢ଼ଉ ?

(ଘ) ସରକାରୀ ଏବଂ ପ୍ରଶାସନିକ ଉଦାସୀନତା, ଅପାରଗତା ଓ ମାଫିଆମାନଙ୍କ ବିରୋଧରେ ପଦକ୍ଷେପ ନେବାର ଭୟ ଦ୍ୱାରା ଅତିଷ୍ଠ ହୋଇ ସମସ୍ତ ଆଇନ୍ କାନୁନ୍, ଉଚ୍ଚ ନ୍ୟାୟାଳୟ ଏବଂ ଉଚ୍ଚତମ ନ୍ୟାୟାଳୟର ଆଦେଶକୁ ଉପହାସ କରି ବେଆଇନ୍ ଚିଙ୍ଗୁଡ଼ି ଚାଷ କରି ପରିବେଶ ଏବଂ ମତ୍ସ୍ୟଜୀବୀମାନଙ୍କ ଜୀବନ ଜୀବିକା ଲୁଣ୍ଠନ କରି ଚାଲିଥିବା ମାଫିଆମାନଙ୍କ ଚିଙ୍ଗୁଡ଼ି ଘେରି ଭାଙ୍ଗି ବରଂ ଆଇନ୍‌କୁ କାର୍ଯ୍ୟକାରୀ କରୁଥିବା ଓ ପରିବେଶ ସୁରକ୍ଷା କରିବାର ସାମ୍ବିଧାନିକ ମୌଳିକ କର୍ତ୍ତବ୍ୟ (ସମ୍ବିଧାନର ଧାରା-୫୧ (କ)) ସମ୍ପାଦନ କରୁଥିବା ମତ୍ସ୍ୟଜୀବୀମାନେ ଯଦି ଆଇନ୍‌କୁ ହାତକୁ ନେବା ଅପରାଧରେ ଅପରାଧୀ, ତେବେ ଏଇ ମାଫିଆମାନେ ଗୋଟିପଣେ ଗେହ୍ଲାପୁଅ ହୋଇ କେମିତି ଆଇନ୍ ଶାସନ ଜାହିର୍ କରୁଥିବା ମାଜିଷ୍ଟ୍ରେଟ୍ ଏବଂ ଏସ୍.ପି. ମାନଙ୍କ ବାହୁଛାୟା ତଳେ ବାଆ ପାଣି ଖାଇ ଫୁଲୁଛନ୍ତି ? ସେମାନେ ବୋଧହୁଏ ଆଇନ୍ ଶାସନର ମାନ୍ୟକାରୀ ଭାବରେ ଆମର ଆଦର୍ଶ ଏବଂ ଦେଶର ଆଇନ୍ ଶାସନ ପାଳନକାରୀର ଉପଯୁକ୍ତ ନମୁନା ! ଆମ ''ଗଣତାନ୍ତ୍ରିକ'' ରାଷ୍ଟ୍ରରେ ଆଇନ୍ ଶାସନର ଧ୍ୱଜାଧାରୀ ଏଇ ମାଜିଷ୍ଟ୍ରେଟ୍ ଏବଂ ପୋଲିସ୍‌ମାନଙ୍କର ''ଆଇନ୍ ଶାସନ'' ର ସଂଜ୍ଞା ନିରୂପଣ ଏବଂ ତାପ୍ରତି ସମ୍ମାନ ଏବଂ ସଚେତନତାକୁ ଧନ୍ୟବାଦ ଦେବା କଥା !

(ଙ) ମାଜିଷ୍ଟ୍ରେଟ ଏବଂ ପୋଲିସ୍‌ର ସମସ୍ତ ଯୁକ୍ତିକୁ ଯଦିବା ଯୁକ୍ତି ପାଇଁ ମାନି ନିଆଯାଏ ତେବେ ଏହି ଆଇନ୍ ଶାସନର ମାରଫତ୍‌ଦାରମାନେ କେଉଁ ଆଇନ୍ ବଳରେ ମତ୍ସ୍ୟଜୀବୀମାନଙ୍କୁ ଚୋର ଭଳି ରାତି ୨ଟା ବେଳେ ରାତି ଅନ୍ଧାରରେ ନିଦ୍ରିତ ଅବସ୍ଥାରେ ଅତର୍କିତ ଗିରଫ କରି ଉଠେଇ ଆଣିବାକୁ ଯାଇଥିଲେ ? ମତ୍ସ୍ୟଜୀବୀମାନେ ଦିନବେଳେ ଘେରିଭାଙ୍ଗି ଫେରି ଆସିଥିଲେ ସେମାନଙ୍କୁ ତ' ଯଥେଷ୍ଟ ଆଗରୁ ଗିରଫ କରାଯାଇ ପାରିଥାଆନ୍ତା ! ପୋଲିସ୍ ମତ୍ସ୍ୟଜୀବୀମାନଙ୍କ ନେତାକୁ ଗିରଫ କରିବାକୁ ଯାଇଥିଲା ନା ସେମାନଙ୍କୁ କାହା ଇଙ୍ଗିତରେ ଭଡ଼ାଟିଆ ଗୁଣ୍ଡାଙ୍କ ଭଳି ଉଠେଇ ଆଣିବାକୁ ଯାଇଥିଲା ? ଏମିତି ଅନ୍ଧାରରେ ଉଠେଇ ଆଣିବା ଉଦ୍ୟମ ପଛରେ କିଛି ଅନ୍ଧାରୀ ଉଦ୍ଦେଶ୍ୟ ଥିଲା କି ? ଗୁଳିକାଣ୍ଡ ସମୟର ଏବଂ ପୂର୍ବବର୍ତ୍ତୀ ଘଟଣାକ୍ରମ ଅନ୍ତତଃ ଏମିତି ସନ୍ଦେହ ଉପୁଜାଇବାକୁ ଯଥେଷ୍ଟ ଯୁକ୍ତିଯୁକ୍ତ ଖୋରାକ୍ ଯୋଗାଏ ।

(ଚ) ଠିକ୍ ୨୯.୦୫.୧୯୯୯ ତାରିଖ ଦିନ, ଯେଉଁଦିନ ମତ୍ସ୍ୟଜୀବୀମାନେ ସେମାନଙ୍କର ଦ୍ୱିତୀୟ ପର୍ଯ୍ୟାୟ "କର ବା ମର ଅଭିଯାନ" ଆରମ୍ଭ କଲେ ସେଦିନ ବ୍ରହ୍ମଗିରି ବିଧାୟକ, ଯୁବ କଂଗ୍ରେସ ସଭାପତି ତଥା ମାଫିଆ ଏବଂ ଅଣ ମତ୍ସ୍ୟଜୀବୀମାନଙ୍କର ଜଣେ ଦୃଢ଼ ସମର୍ଥକ କୁହାଯାଉଥିବା ଶ୍ରୀ ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର (ଲୁଲୁ) ଭୁବନେଶ୍ୱର ଠାରେ ସାମ୍ବାଦିକ ସମ୍ମିଳନୀ ଡାକି ମତ୍ସ୍ୟଜୀବୀମାନଙ୍କ ଅଭିଯାନ ବିରୋଧରେ ସ୍ୱର ଉତ୍ତୋଳନ କରିବା ସହିତ "ଭବିଷ୍ୟତରେ ଯଦି କୌଣସି ଆତଙ୍କଜନକ ପରିସ୍ଥିତି ସୃଷ୍ଟିହୁଏ ତେବେ ମତ୍ସ୍ୟଜୀବୀ ବଞ୍ଚାଅ ଆନ୍ଦୋଳନର କର୍ମକର୍ତ୍ତାମାନେ ଦାୟୀ ରହିବେ ବୋଲି" (ସମାଜ ୩୦.୦୫.୧୯୯୯) ଧମକ ଦେଇଥିଲେ ଏବଂ ଠିକ୍ ସେଇଦିନ ରାତିରେ ହିଁ ଏଭଳି ଏକ ବର୍ବରୋଚିତ ଗୁଳିକାଣ୍ଡ ସଂଗଠିତ ହେଲା । କେତେକ ସୂତ୍ରରୁ ସନ୍ଦେହ ପ୍ରକାଶ କରାଯାଇଛି ଯେ ଶ୍ରୀ ମହାପାତ୍ର କଳେବଳେ କୌଶଳେ ଘେରି ଭାଙ୍ଗିବାକୁ ଜୁନ୍ ୨୦ ତାରିଖ ଯାଏ ଘୁଞ୍ଚେଇ ଦେବାକୁ ଚାହୁଁଥିଲେ, ଯାହା ଫଳରେ କି ତାଙ୍କ ବାହୁଛାୟା ତଳେ ଆଶ୍ରିତ ମାଫିଆମାନଙ୍କର ସେଇ ସମୟ ଭିତରେ ଚିଙ୍ଗୁଡ଼ି ଅମଳ ହୋଇଯିବ ।

(ଛ) ଏହା ମଧ୍ୟରେ ଆଉ ଏକ ଚାଞ୍ଚଲ୍ୟକର ତଥ୍ୟ ଲୋକଲୋଚନକୁ ଆସିଛି ଯେ ମତ୍ସ୍ୟଜୀବୀମାନଙ୍କ ଉପରେ ଯେଉଁ ଗୁଳି ଚଳାଯାଇଛି ତା' ମଧ୍ୟରେ ପୋଲିସ୍ ବନ୍ଧୁକର ଗୁଳି ବ୍ୟତୀତ ଦେଶୀ ଛତ୍ରା ବନ୍ଧୁକର ଗୁଳି ମଧ୍ୟ ରହିଛି । ପ୍ରତ୍ୟକ୍ଷଦର୍ଶୀ ଜନସାଧାରଣ ଘଟଣାସ୍ଥଳରୁ ଏଭଳି ଅନେକ ଦେଶୀ ବନ୍ଧୁକର ଗୁଳି ଉଦ୍ଧାର କରିଥିଲେ । ପରେ ପରେ ଚିଲିକା ଗୁଳିକାଣ୍ଡରେ ମୃତ ମତ୍ସ୍ୟଜୀବୀଙ୍କ ଦେହରୁ ଉଦ୍ଧାର କରାଯାଇଥିବା ଗୁଳିର ଫୋରେନସିକ୍ ପରୀକ୍ଷା ପରେ ମଧ୍ୟ ଏକଥା ସିଦ୍ଧ ହୋଇଛି । ପ୍ରତ୍ୟକ୍ଷଦର୍ଶୀ ମତ୍ସ୍ୟଜୀବୀମାନେ ଗୁଳିକାଣ୍ଡ ପରେ ପରେ କହିଥିଲେ ଯେ ରାତିରେ ପୋଲିସ୍ ଗାଡ଼ି ସହିତ ମଧ୍ୟ କେତେକ ଧଳା ଆମ୍ବାସଡ଼ର କାରରେ ବୋଝେଇ ହୋଇ ଅନ୍ୟ କେତେକ ଲୋକ ଆସିଥିଲେ । ପୁଣି କୁହାଯାଇଥିଲା ଯେ କେହି ମୁହଁକୁ ଟର୍ଚ୍ଚ ପକେଇ ପୋଲିସ୍‌କୁ ମତ୍ସ୍ୟଜୀବୀ ନେତାମାନଙ୍କୁ ଚିହ୍ନେଇ ଦେଉଥିଲା । ଏଥିରୁ ସ୍ପଷ୍ଟ ହୋଇଯାଏ ଯେ ମାଫିଆମାନଙ୍କ ସଲାସୂତ୍ରରେ ବରଂ ସେମାନଙ୍କୁ ସୁରକ୍ଷା ଆବରଣ ଦେଇ ପୋଲିସ୍ ମତ୍ସ୍ୟଜୀବୀମାନଙ୍କ ଉପରେ ଗୁଳି ଚଳେଇବାକୁ ଅଣେଇଥିଲା । ରାତିରେ ଟର୍ଚ୍ଚ ପକେଇ ମତ୍ସ୍ୟଜୀବୀ ନେତାମାନଙ୍କୁ ଚିହ୍ନେଇ ଦେଇଥିବା ସେ ବ୍ୟକ୍ତିଜଣକ କିଏ ?

(ଜ) କୌଣସି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଇଙ୍ଗିତରେ ଏହା ଯେ ପୋଲିସ୍‌ର ଏକ ସୁସଂଗଠିତ ଏବଂ ସୁପରିକଳ୍ପିତ ଗଣହତ୍ୟା ଥିଲା ତାହା ଅନ୍ୟ ଏକ ଘଟଣାରୁ ପୁଣିଥରେ ସ୍ପଷ୍ଟ ହୋଇଯାଏ । ପ୍ରତ୍ୟକ୍ଷଦର୍ଶୀ ଜନସାଧାରଣଙ୍କଠାରୁ ମିଳିଥିବା ବିବରଣୀରୁ ଜଣାଯାଏ ଯେ ପୋଲିସ୍ ସୋରଣକୁ ଗୁଳି ଚଳେଇବାକୁ ଯିବା ପୂର୍ବରୁ ସମସ୍ତ ବିଦ୍ୟୁତ୍ ଏବଂ ଟେଲିଫୋନ୍ ସଂଯୋଗକୁ ବିଚ୍ଛିନ୍ନ କରିଦେଇଥିଲା ଏବଂ ସୋରଣରୁ ସମସ୍ତ ଯାତାୟତ ପଥକୁ ଅବରୋଧ କରି ଦେଇଥିଲା । ସୋରଣ ଗାଁରେ ନିରସ୍ତ୍ର, ନିଦ୍ରାଗତ ଜନସାଧାରଣଙ୍କ ଉପରେ ଏଭଳି ସୁପରିକଳ୍ପିତ ଆବଦ୍ଧ ଗଣହତ୍ୟା ସ୍ୱାଧୀନ ଭାରତରେ ଜାଲିୱାନାୱାଲାବାଗ୍ ଗଣହତ୍ୟା ସହିତ ତୁଳନୀୟ ।

# ''ଗଣହତ୍ୟାକାରୀମାନଙ୍କୁ ନରହତ୍ୟା ଅପରାଧରେ ଗିରଫ କରାଯାଉ''

ଧନୀକ, ଅଭିଜାତ, କ୍ଷମତାଶାଳୀ ଗୋଷ୍ଠୀର ସ୍ୱାର୍ଥରକ୍ଷା ପାଇଁ କିମ୍ବା ସେମାନଙ୍କ ସହ ସିଧାସଳଖ ସଲାସୁତୁରା କରି ପୁଲିସ୍, ''ଆଇନ୍ ଶୃଙ୍ଖଳା ରକ୍ଷା'' ବା ''ଆତ୍ମରକ୍ଷା'' ଆଳରେ ଗଣହତ୍ୟା ସଂଗଠିତ କରିବା ଏକ ଚିରାଚରିତ ଘଟଣା । ସେ ପରିପ୍ରେକ୍ଷୀରେ ସୋରଣ ଗୁଳିକାଣ୍ଡକୁ ଅପ୍ରତ୍ୟାଶିତ ବା ଅସ୍ୱାଭାବିକ ମନେ କରିବା ବୋକାମୀ ହେବ । କିନ୍ତୁ ଚିଲିକା ପ୍ରସଙ୍ଗରେ ଏଇ ସଲାସୁତୁରାକୁ ନେଇ ବର୍ଷ ବର୍ଷ ଧରି ସର୍ବସାଧାରଣରେ, ସମ୍ବାଦପତ୍ରମାନଙ୍କରେ ବିତର୍କ, ଉଚ୍ଚନ୍ୟାୟାଳୟର ତଥ୍ୟାନୁସନ୍ଧାନକାରୀ ରିପୋର୍ଟରେ ଏ ବିଷୟରେ ଉଲ୍ଲେଖ ଏବଂ ଏମିତିକି ରାଜନୈତିକ ମହଲ, ସରକାରୀଙ୍କ ଦ୍ୱାରା ଏ ବିଷୟରେ ସ୍ୱୀକାରୋକ୍ତି, ମତ୍ସ୍ୟଜୀବୀମାନଙ୍କର ଏ ବିଷୟରେ ଆନ୍ଦୋଳନ ସତ୍ତ୍ୱେ ଯେ ପୋଲିସ୍ ଏବଂ ପ୍ରଶାସନ ଏ ନିର୍ଲ୍ଲଜ ସଲାସୁତୁରା ବଜାୟରଖି ଗଣହତ୍ୟା ଘଟାଇ ପାରେ, ଗୋଟିଏ ଗଣତାନ୍ତ୍ରିକ ସମାଜରେ ଏହାହିଁ ଅସ୍ୱାଭାବିକ । ଏହାହିଁ ପୋଲିସ୍, ପ୍ରଶାସନ ଏବଂ ପ୍ରଭାବଶାଳୀ ଗୋଷ୍ଠୀର ନିର୍ଭୀକ, ନଗ୍ନ ଦାମ୍ଭିକତା ସହିତ ଆମ ସମାଜରେ ଏବଂ ଦେଶରେ ଗଣତାନ୍ତ୍ରିକ ସ୍ୱର ଓ ସଚେତନତାର ନିଷ୍କ୍ରିୟତାକୁ ପ୍ରତିପାଦିତ କରେ । *ଯେଉଁଠି ନିଜର ସୁରକ୍ଷା ବଳୟ ଭିତରେ ରଖି, ପୋଲିସ୍ ମାଫିଆମାନଙ୍କୁ ଗଣହତ୍ୟା ଘଟାଇବାକୁ ଡାକିନେଇ ଥିବାର ଆପାତତଃ ପ୍ରମାଣ ଯୋଗ୍ୟ ତଥ୍ୟ ମିଳି ସାରିଲାଣି ସେ ପରିପ୍ରେକ୍ଷୀରେ ଏଇ ଗଣହତ୍ୟା ଘଟଣାକୁ '' ପୋଲିସ୍‌ର ଆଇନ୍ ଶୃଙ୍ଖଳା ରକ୍ଷା'' କିମ୍ବା ''ଆତ୍ମରକ୍ଷା'' ଆଳରେ ଏଡେଇ ଯିବାର ଅର୍ଥ ଗଣତନ୍ତ୍ରର ମୁଖା ଭିତରେ ମିଲିଟାରୀ ବା ପୋଲିସ ଏକଛତ୍ରବାଦ ପାଇଁ ବାଟ ଫିଟେଇବା ହେବ ନାହିଁ କି ???*

ନିର୍ଦ୍ଦିଷ୍ଟ ପ୍ରଶାସନିକ ଏବଂ ପୋଲିସ ଅଫିସରଙ୍କୁ ଯଦି ଉତ୍ତରଦାୟୀ କରାନଯାଏ ତେବେ ଆଜିକାଲି ସମାଜରେ ଯେଉଁ ପରିମାଣରେ ନୃଶଂସତା ଏବଂ ପ୍ରଭାବଶାଳୀ ଗୋଷ୍ଠୀର ପ୍ରଭାବ ବୃଦ୍ଧି ପାଉଛି ସେ କ୍ଷେତ୍ରରେ ପୋଲିସ୍ ଏବଂ ପ୍ରଶାସନ ସମସ୍ତ ପ୍ରକାର ଗଣ ଆନ୍ଦୋଳନ, ଜନମତ, ଜନ ପ୍ରତିବାଦକୁ ନୃଶଂସ ଭାବରେ ଦମନ କରି '' ଆଇନ୍ ଶୃଙ୍ଖଳା '' ବା '' ଆତ୍ମରକ୍ଷା'' ଆଳରେ ଖସିଯିବାର ବହୁ ସମ୍ଭାବନା ରହିଛି, ଯାହାକି ଏକ ଗଣତାନ୍ତ୍ରିକ ସମାଜ ପାଇଁ ଅଧିକରୁ ଅଧିକ ବିପଦଜନକ । ଏଇ ପରିପ୍ରେକ୍ଷୀରେ ସୋରଣ ଗଣହତ୍ୟା ଉପରେ ମତ୍ସ୍ୟଜୀବୀ ଆନ୍ଦୋଳନ ତରଫରୁ ଏକ ଅଭିନବ ଅଥଚ ଅତ୍ୟନ୍ତ ଯୁକ୍ତି ଯୁକ୍ତ ଏବଂ ଦୃଢ଼ ଦାବି କରାଯାଇଛି ଯେ, ଏହି ଗଣହତ୍ୟା ସହ ସମ୍ପୃକ୍ତ ଅପରାଧୀ ପୋଲିସ ଏବଂ ପ୍ରଶାସନିକ ଅଫିସର ମାନଙ୍କୁ ନରହତ୍ୟା ଅପରାଧରେ ଗିରଫ କରାଯାଇ ଫୌଜଦାରୀ ଦଣ୍ଡବିଧି ଆଇନ୍ ର ଧାରା ୩୦୨ ଅନୁଯାୟୀ ସେମାନଙ୍କ ବିରୋଧରେ ମୋକଦ୍ଦମା ରୁଜୁ କରାଯାଉ । ଏ ସମ୍ବନ୍ଧରେ ମତ୍ସ୍ୟଜୀବୀ ମହାସଂଘର ସମ୍ପାଦକଙ୍କ ଦ୍ୱାରା ପୋଲିସ୍ ମହାନିର୍ଦ୍ଦେଶକଙ୍କ ପାଖରେ ସନ୍ଦିଗ୍ଧ ଅପରାଧୀ ଜିଲ୍ଲାପାଳ ଶ୍ରୀ ସର୍ବେଶ୍ୱର ମହାନ୍ତି, ଏସ.ପି. ଶ୍ୟାମସୁନ୍ଦର ହାଁସଦା, ଖୋର୍ଦ୍ଧା ସବକଲେକ୍ଟର ବିଶାଳ ଦେବ, ବାଣପୁର ତହସିଲଦାର ଏବଂ ଚିଲିକା ବି.ଡି.ଓ ଙ୍କ ସମେତ ବିଧାୟକ ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ରଙ୍କ ବିରୋଧରେ ସୁପରିକଳ୍ପିତ ହତ୍ୟାକାଣ୍ଡ ଘଟାଇ ଥିବା ଅପରାଧରେ ଗିରଫ କରାଯାଇ ଫୌଜଦାରୀ ଆଇନ୍ ଅନୁସାରେ କାର୍ଯ୍ୟାନୁଷ୍ଠାନ କରାଯିବାକୁ ଫାକ୍‌ସ ଯୋଗେ ବିଧିବଦ୍ଧ ଏଫ.ଆଇ.ଆର, ରୁଜୁ କରାଯାଇଛି ବୋଲି ଜଣାପଡିଛି । ମତ୍ସ୍ୟଜୀବୀମାନଙ୍କର ଏହି ଦାବି ପ୍ରତି ଗଣତନ୍ତ୍ର ପ୍ରେମୀ ସାଧାରଣ ଜନତା , ଗଣମାଧ୍ୟମ, ସଚେତନ ନାଗରିକ, ଏବଂ ଏପରିକି ରାଜନୈତିକ ନେତା ମାନଙ୍କ ତରଫରୁ ମଧ୍ୟ ବିପୁଳ ସମର୍ଥନ ମିଳିଛି । ସେମାନେ ସତନ୍ତ୍ର ଭାବରେ ଏଭଳି ଦାବି ଉପସ୍ଥାପନ କରିଛନ୍ତି ।

କୌଣସି ବ୍ୟକ୍ତି ଯଦିଓ ନିଜ ଆତ୍ମରକ୍ଷା ପାଇଁ ନରହତ୍ୟା କରେ ପୋଲିସ୍ ପ୍ରଥମେ ତାକୁ ଗିରଫ କରି ବିଧିବଦ୍ଧ ମୋକଦ୍ଦମା ରୁଜୁ କରେ ଏବଂ ସେ ପ୍ରକୃତରେ ଆତ୍ମରକ୍ଷା ପାଇଁ ବିଶ୍ୱସ୍ତ ଭାବରେ ନରହତ୍ୟା ଘଟାଇଛି କି ନା ତାହା ବିଚାରାଳୟରେ ସାବ୍ୟସ୍ତ କରାଯାଏ । ଠିକ୍ ସେହିଭଳି ପୋଲିସ୍ ଯଦି ନରହତ୍ୟା ଘଟାଏ ଏବଂ ତାହା ସଂଗଠିତ ଓ ଉଦ୍ଦେଶ୍ୟମୂଳକ ବୋଲି ଆପାତତଃ ପ୍ରମାଣ ଥାଏ ତେବେ ସମ୍ପୃକ୍ତ ପୋଲିସ୍ ଅଫିସରଙ୍କୁ ଗିରଫ କରାଯାଇ ସେମାନଙ୍କ ବିରୋଧରେ କାହିଁକି ମୋକଦ୍ଦମା ରୁଜୁ କରାନଯିବ ? ଆତ୍ମରକ୍ଷା ପାଇଁ କିମ୍ବା ନୁହେଁ ତାହା ପ୍ରମାଣ ସାପେକ୍ଷ ହୋଇଥିବାରୁ ପୋଲିସ୍ କ୍ଷେତ୍ରରେ ମଧ୍ୟ ତାହା ବିଚାରାଳୟରେ ସାବ୍ୟସ୍ତ ହେବା ଆବଶ୍ୟକ ।

## ସୋରଣ ଗୁଳିକାଣ୍ଡ ପରେ ..........

ସୋରଣର ବର୍ବରୋଚିତ ଗୁଳିକାଣ୍ଡପରେ ପ୍ରବଳ ଜନମତର ସମ୍ମୁଖୀନ ହୋଇଥିବା ପ୍ରଶାସନ ତାର ମୁକାବିଲା କରିବା ପାଇଁ ଚିଲିକା ଉପରେ ବିଭିନ୍ନ ପ୍ରକାର ପଦକ୍ଷେପ ନେବା ପାଇଁ ଅନ୍ତତଃ ଘୋଷଣା କରିଛି । ଚିଲିକାର କିଛି କିଛି ସ୍ଥାନରେ ଚିଙ୍ଗୁଡି ଘେରି ଭଙ୍ଗା ମଧ୍ୟ ହୋଇଛି । ବିଧାନସଭା ଗୃହ କମିଟିର ସୁପାରିଶ୍ ଅନୁଯାଇ ଚିଲିକାରେ ଚିଙ୍ଗୁଡି ଚାଷକୁ ନିଷେଧ କରିବା ସହିତ ଚିଲିକାର ସାମୂହିକ ପରିସ୍ଥିତିକୁ ପରିଚାଳନା ପାଇଁ ବିଧାନ ସଭାରେ ଏକ ବିଧେୟକ ଆଣିବା ଉଦ୍ଦେଶ୍ୟରେ ଜୁନ୍ ମାସ ଶେଷ ଆଡକୁ ସରକାରଙ୍କ ତରଫରୁ ଏକ ସର୍ବଦଳୀୟ ବୈଠକ ଆହ୍ୱାନ କରାଯାଇଥିଲା, ଯେଉଁଥିରେ କି ଏ ବିଷୟରେ ସହମତି ପ୍ରକାଶ ପାଇଛି ବୋଲି କୁହାଯାଇଛି । କିନ୍ତୁ ଏହି ସର୍ବଦଳୀୟ ବୈଠକରେ ପେଶ୍ କରାଯାଇଥିବା ଭିତ୍ତିପତ୍ରକୁ ଅନୁଧାନ କଲେ ଜଣାଯାଏ ଯେ, ସୁପ୍ରିମ୍ କୋର୍ଟଙ୍କ ଆଦେଶ, ଚିଲିକାର ପରିବେଶ କ୍ଷୟ ଇତ୍ୟାଦିକୁ ଏଭଳି ଏକ ବିଧେୟକ ପାଶ୍ କରାଇବା ପଛରେ କାରଣ ବୋଲି ଦର୍ଶାଯାଇଥିଲେ ମଧ୍ୟ ଚିଲିକା ମତ୍ସ୍ୟଜୀବୀମାନଙ୍କର ଆନ୍ଦୋଳନ ଏବଂ ଶହୀଦ ହେବାଯେ ଏହା ପଛରେ ପ୍ରକୃତ କାରଣ ତାହାକୁ ସରକାରୀ ଦଳ ସ୍ୱୀକାର କରିପାରିନାହିଁ । ସୁପ୍ରିମ୍ କୋର୍ଟ ରାୟ ଏବଂ ପରିବେଶ ଧ୍ୱଂସ- ଏ ସବୁ କାରଣ ତ ବହୁ ଆଗରୁ ରହି ଥିଲା, ତେବେ ଏଭଳି ଏକ ବିଧେୟକ ପାଶ୍ କରାଯିବାକୁ ଆଗରୁ କାହିଁକି ପଦକ୍ଷେପ ନିଆଯାଉ ନଥିଲା ? ଆମର ତଥାକଥିତ ଗଣତାନ୍ତ୍ରିକ ରାଷ୍ଟ୍ରରେ ପ୍ରକୃତ " ଗଣସ୍ୱାର୍ଥ" ଏବଂ " ପ୍ରଶାସନିକ ସ୍ୱାର୍ଥ" ଏତେ ପରସ୍ପର ବିରୋଧୀ ଯେ, ଅହଂକାରୀ ଶାସକ ଗୋଷ୍ଠୀ " ଗଣଶକ୍ତି" ର ଅଭ୍ୟୁତ୍‌ଥାନକୁ ମୋଟେ ସହ୍ୟ କରି ପାରେନାହିଁ ବରଂ ତାକୁ ସ୍ୱିକୃତି ଦେବାକୁ ଏକ ମର୍ଯ୍ୟାଦାର ପ୍ରଶ୍ନ ବୋଲି ଭାବେ ।

ଏହା ଭିତରେ ନ୍ୟସ୍ତସ୍ୱାର୍ଥ, ହତାଶ ମାଫିଆ ମାନେ ବି ବିଭିନ୍ନ ଆଳରେ ବିଭିନ୍ନ ମୁଖାପିନ୍ଧି ତାଙ୍କର ମାରପେଞ୍ଚ ଚାଲୁ ଚାଲୁରଖିଛନ୍ତି । କିଛି ଅଣ ମତ୍ସ୍ୟଜୀବୀଙ୍କୁ ଆଗରେ ଥୋଇ ତାଙ୍କ କାନ୍ଧରେ ବନ୍ଧୁକ ରଖି ଫୁଟାଇବାକୁ ଚେଷ୍ଟା କରୁଛନ୍ତି । ନିଜର ସ୍ୱାର୍ଥ ଚରିତାର୍ଥ କରିବା ପାଇଁ ସେମାନଙ୍କୁ ଆଳ କରି ବିଭିନ୍ନ ଜାଗାରେ ଫମ୍ପା ଆୱାଜ ଦେଇ କିଛି ମୁଖା ପିନ୍ଧା ବରାଦୀ ସଂଗଠନ ଗଠନ କରୁଛନ୍ତି ବୋଲି ପ୍ରକାଶ ପାଇଛି । ସେସବୁରୁ "ଚିଲିକା ସଂଗଠନ" ଓ "ପେଷାଦାର ମତ୍ସ୍ୟଜୀବୀ " ସଂଗଠନ ଗୋଟିଏ ଗୋଟିଏ ବୋଲି ଜଣାଯାଏ । ଏ ଭିତରେ ମତ୍ସ୍ୟଜୀବୀମାନେ ମଧ୍ୟ ଏମାନଙ୍କ ଭଣ୍ଡ ଉଦ୍ୟମକୁ ବିଫଳ କରି ଚିଙ୍ଗୁଡି ଘେରି ଭାଙ୍ଗିବାକୁ ମରଣ ସେନା ଗଠନ କରିବେ ବୋଲି ଘୋଷଣା କରିଛନ୍ତି ।

ହତାଶ ମାଫିଆମାନେ କିଛି ଲୋକଙ୍କ ମାଧ୍ୟମରେ ଘେରିଭଙ୍ଗା ବନ୍ଦ କରିବାକୁ ଓଡ଼ିଶା ହାଇକୋର୍ଟରେ ମଧ୍ୟ ମୋକଦ୍ଦମା ଦାଏର କରିଥିଲେ ଏବଂ ତାଙ୍କ ତରଫରୁ ଲଢ଼ିବାକୁ ଦେଶର ଜଣେ "ଦାମୀ" ଆଇନ୍‌ଜୀବୀ ସିଦ୍ଧାର୍ଥ ଶଙ୍କର ରାୟ ( ପଶ୍ଚିମ ବଙ୍ଗର ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ବରିଷ୍ଠ କଂଗ୍ରେସ ନେତା) ଙ୍କୁ ଅଣେଇଥିଲେ । ଗତ ୨୯.୬.୯୯ ତାରିଖଦିନ ଓଡ଼ିଶା ହାଇକୋର୍ଟର ବିଚାରପତି ପ୍ରଦୀପ୍ତ ରାୟ ଓ ଚିତ୍ତରଞ୍ଜନ ପାଲ୍‌ଙ୍କୁ ନେଇ ଗଠିତ ଖଣ୍ଡପୀଠ, ଘେରିଭଙ୍ଗା ଆଇନ୍‌ର ପରିସର ବାହାରେ କରାଯାଇପାରିବ ନାହିଁ ବୋଲି ଏକ ଆଦେଶ ଦେଇଥିଲେ । ଏଇଠି ପ୍ରଶ୍ନ ଉଠେ ଯେଉଁ 'ସାଧାରଣ' ଲୋକମାନଙ୍କର ଜୀବନ ଓ ଜୀବିକା ଏହି ଘେରି ଭଙ୍ଗା ଦ୍ୱାରା ବିପନ୍ନ ହେବବୋଲି କୁହାଯାଉଛି ସେଇ 'ସାଧାରଣ' ଲୋକମାନେ ପ୍ରକୃତରେ କେତେ ସାଧାରଣ, ଯେଉଁମାନଙ୍କର ଦୌଡ ସିଦ୍ଧାର୍ଥ ଶଙ୍କର ରାୟଙ୍କ ପାଖରେ ପହଞ୍ଚି ପାରେ ? ଅବଶ୍ୟ ଏ ପ୍ରଶ୍ନ ହାଇକୋର୍ଟ ଙ୍କ ବିଚାର ପରିସରଭୁକ୍ତ ନୁହେଁ ! ପୁଣି ଜୁଲାଇ ୧ ତାରିଖ ଦିନ ଓଡ଼ିଶା ହାଇକୋର୍ଟର ଅସ୍ଥାୟୀ ମୁଖ୍ୟ ବିଚାରପତି ଅରିଜିତ ପଶାୟତ ଏବଂ ବିଚାରପତି ଚୌଧୁରୀ ପି.କେ ମିଶ୍ରଙ୍କୁ ନେଇ ଗଠିତ ଆଉ ଏକ ଖଣ୍ଡ ପୀଠ ଏଇଭଳି ୧୦ ଟି ରିଟ୍‌କୁ ଏକତ୍ର ଶୁଣାଣି କରି ସୁପ୍ରିମ କୋର୍ଟଙ୍କ ୧୧.୧୨.୯୬ ତାରିଖ ରାୟ ପରିପ୍ରେକ୍ଷୀରେ ଚିଲିକାର ଚିଙ୍ଗୁଡ଼ି ଚାଷକୁ ବେଆଇନ୍ ଘୋଷଣା କରି ସରକାର ଘେରି ଭାଙ୍ଗି ପାରିବେ ବୋଲି ଆଦେଶ ଦେଇଛନ୍ତି । ତେବେ କୌଣସି ବିଷୟରେ ଆମ ଦେଶର ବିଚାରାଳୟ ମାନଙ୍କର ଆଇନଗତ ତର୍ଜମା କେତେ ଅସଂଗତି ପୂର୍ଣ୍ଣ, ପରସ୍ପର ବିରୋଧୀ ଏବଂ ପରିବର୍ତ୍ତନଶୀଳ ହୋଇପାରେ, ତାହା ପୁଣି ଥରେ ପ୍ରମାଣିତ ହୋଇଯାଇଛି, ହାଇକୋର୍ଟର ୨ଟି ବେଞ୍ଚର ଏଇ ୨ଟି ପରସ୍ପର ବିପରୀତ ରାୟରୁ । ଗତ ଜୁଲାଇ ୨ ତାରିଖ ଦିନ ଚିଲିକା ମତ୍ସ୍ୟଜୀବୀ ମହାସଂଘ ତରଫରୁ " ବିଧାନ ସଭା ଘେରାଉ" ଡାକରାରେ ପ୍ରାୟ ୨୦ ହଜାରରୁ ଉର୍ଦ୍ଧ୍ୱ ମତ୍ସ୍ୟଜୀବୀ ଭୁବନେଶ୍ୱରଠାରେ ଏକ ଗଣ ବିକ୍ଷୋଭରେ ଏକତ୍ରିତ ହୋଇଥିଲେ । ଚିଲିକାରେ ତୁରନ୍ତ ସମସ୍ତ ଚିଙ୍ଗୁଡ଼ି ଘେରି ଉଚ୍ଛେଦ , ଚିଙ୍ଗୁଡ଼ି ଚାଷ ସମ୍ପୂର୍ଣ୍ଣ ନିଷେଧ, ଗଣ ହତ୍ୟାକାରୀ ଅଫିସର ମାନଙ୍କ ବିରୋଧରେ ଫୌଜଦାରୀ ମୋକଦ୍ଦମା ଦାୟର ପ୍ରଭୃତି ୧୩ ଦଫା ଦାବୀ ସମ୍ବଳିତ ଏକ ଦାବୀ ପତ୍ର ମତ୍ସ୍ୟଜୀବୀମାନଙ୍କ ତରଫରୁ ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କୁ ଦିଆଯାଇଥିଲା ।

## ଚିଲିକାର କ୍ଷତାକ୍ତ ଇତିହାସ-ସଂକ୍ଷେପରେ..........

☆ ୧୯୫୯ ମସିହାରେ ଚିଲିକା ମତ୍ସ୍ୟଜୀବୀମାନଙ୍କର ଆନ୍ଦୋଳନ ପରେ ମତ୍ସ୍ୟଜୀବୀମାନଙ୍କର ସମବାୟ ସଂଗଠନ ବ୍ୟବସ୍ଥାର ଅୟମାରମ୍ଭ ।

☆ ଇରାନର ରାମ୍‌ସରଠାରେ ଜାତିସଂଘ ପକ୍ଷରୁ ୧୯୭୧ ମସିହାରେ ପ୍ରାକୃତିକ ପରିବେଶର ସଂରକ୍ଷଣ ପାଇଁ ଆନ୍ତର୍ଜାତିକ ସମ୍ମିଳନୀ ।

☆ ୧୯୮୧ ମସିହାରେ ଭାରତ ସରକାର ରାମ୍‌ସର କନ୍‌ଭେନସନ୍ ଘୋଷଣାନୁସାରେ ଚିଲିକା ହ୍ରଦର ସଂରକ୍ଷଣ ପାଇଁ ଆନ୍ତର୍ଜାତିକ ଭାବରେ ପ୍ରତିଶ୍ରୁତି ବଦ୍ଧ ।

☆ ୧୯୯୧ ମସିହାର ଡ଼ିସେମ୍ବର ଶେଷ ପର୍ଯ୍ୟନ୍ତ ଚିଲିକା ହ୍ରଦରେ ମତ୍ସ୍ୟଜୀବୀମାନଙ୍କର ମାଛ, କଙ୍କଡା ଓ ଚିଙ୍ଗୁଡ଼ି ଧରି ଜୀବିକା ନିର୍ବାହ କରିବାରେ ଏକକ ପାରମ୍ପରିକ ଅଧିକାର ରହିଆସିଥିଲା ।

☆ ୧୯୯୧ ମସିହାରେ ତତ୍କାଳୀନ ସରକାର ପୂର୍ବର ଏହି ନୀତି ବଦଳାଇ ହ୍ରଦ ମଧ୍ୟରେ ''କ୍ୟାପଚର୍'' ଓ ''କଲଚର୍'' ଏହି ଭଳି ଦୁଇ ଭାଗ କରି ଚିଙ୍ଗୁଡ଼ି ଚାଷ ପାଇଁ ଏକ ମାରାତ୍ମକ ନୀତି ପ୍ରସ୍ତୁତ କରି ମାଫିଆ ରାଜ ପାଇଁ ଆଇନଗତ ବାଟ ଫିଟାଇଲେ ।

☆ ପ୍ରଥମ କରି ହ୍ରଦ ମଧ୍ୟରେ ଏହି ଲିଜ୍ ନୀତି ଅନୁସାରେ ଅଣ ମତ୍ସ୍ୟଜୀବୀମାନଙ୍କୁ ମାଛଚାଷ ପାଇଁ ଆଇନଗତ ଅଧିକାର ପ୍ରଦାନ କରାଗଲା ।

☆ ସରକାରଙ୍କର ଉପରୋକ୍ତ ଲିଜ୍ ନୀତିକୁ ବିରୋଧ କରି ମତ୍ସ୍ୟଜୀବୀମାନଙ୍କ ପକ୍ଷରୁ ଓଡ଼ିଶା ହାଇକୋର୍ଟରେ ୧୯୯୨ ମସିହାରେ ଆବେଦନ କରାଯାଇଥିଲା ।

☆ ଓଡ଼ିଶା ହାଇକୋର୍ଟଙ୍କ ପକ୍ଷରୁ ଏହି ମୋକଦ୍ଦମାରେ ପ୍ରଫେସର ଘନଶ୍ୟାମ ଦାସଙ୍କ ଅଧ୍ୟକ୍ଷତାରେ ଏକ ତଥ୍ୟାନୁସନ୍ଧାନକାରୀ ଗୋଷ୍ଠୀ ଗଠନ କରାଯାଇଥିଲା । (୨.୪.୧୯୯୩)

☆ ଚିଲିକାରେ ମାଫିଆମାନଙ୍କ ଦୌରାତ୍ମ୍ୟ ଅତି ପ୍ରବଳ ହୋଇପଡ଼ିଛି ବୋଲି ଏହି ତଥ୍ୟାନୁନ୍ଧାନକାରୀ କମିଟି ପକ୍ଷରୁ ହାଇକୋର୍ଟରେ ଏକ ଦୀର୍ଘ ରିପୋର୍ଟ ପ୍ରଦାନ । (୧୬.୮.୧୯୯୩)

☆ ୨୩.୧୧.୧୯୯୩ ତାରିଖରେ ମତ୍ସ୍ୟଜୀବୀମାନଙ୍କର ଚିଲିକାର ମତ୍ସ୍ୟ ଉତ୍ସ ଉପରେ ପାରମ୍ପରିକ ଅଧିକାର ରହିଛି ବୋଲି ହାଇକୋର୍ଟଙ୍କ ସ୍ପଷ୍ଟ ମତ ।

☆ ଚିଲିକାରେ ମାଛ ଧରିବାର ପାରମ୍ପରିକ ଅଧିକାର ଅଣମତ୍ସ୍ୟଜୀବୀମାନଙ୍କର ନାହିଁ ବୋଲି ହାଇକୋର୍ଟଙ୍କର ରାୟ ।

☆ ସାମାନ୍ୟ ସଂଶୋଧନ ସହ ୧୯୯୧ର ଭୁଲ ଲିଜ୍ ନୀତିକୁ ଓଡ଼ିଶା ହାଇକୋର୍ଟର ଅନୁମୋଦନ । ଚିଲିକାର କେବଳ ''ଡ଼ିଆଁ ଓ ଉଠାପାଣି'' ଅଞ୍ଚଳରେ ପାରମ୍ପରିକ ଅସଘନ ପ୍ରଣାଳୀରେ ଚିଙ୍ଗୁଡି ଚାଷ ପାଇଁ ସୀମିତ ଅନୁମତି ପ୍ରଦାନ ।

☆ ଦୃଢ଼ ଭାବରେ ମାଫିଆଙ୍କୁ ହଟାଇବା ପାଇଁ ହାଇକୋର୍ଟଙ୍କର ସ୍ପଷ୍ଟ ନିର୍ଦ୍ଦେଶ ।

☆ ୧୯୯୧ ମସିହାର ଲିଜ୍ ନୀତିର ସାମାନ୍ୟ ସଂଶୋଧନ ସହିତ ୧୯୯୪ ମସିହାରେ ଏକ ସଂଶୋଧିତ ଲିଜ୍ ନୀତି ପ୍ରଣୟନ କରାଯାଇ ଚିଲିକାରେ ବେଆଇନ୍ ଭାବେ ଅଶି ଦଶକର ମଧ୍ୟଭାଗରୁ ଚାଲି ଆସିଥିବା ଚିଙ୍ଗୁଡ଼ି ଚାଷ ପାଇଁ ଆଇନଗତ ମାନ୍ୟତା ପ୍ରଦାନ ।

☆ ମତ୍ସ୍ୟଜୀବୀମାନଙ୍କର ପାରମ୍ପରିକ ଅଧିକାରକୁ ଏହି ଲିଜ୍ ନୀତି ଅନୁସାରେ ବଣ୍ଟରା କରାଯାଇ ଅଣମତ୍ସ୍ୟଜୀବୀମାନଙ୍କ ପାଇଁ ଚିଙ୍ଗୁଡ଼ି ଚାଷ ଲାଗି ନୀତି ସ୍ଥିର ହେଲା ।

☆ ସରକାରଙ୍କର ଏହି ଲିଜ୍ ନୀତିକୁ ମତ୍ସ୍ୟଜୀବୀମାନଙ୍କର ଅଗ୍ରାହ୍ୟ ।

☆ ୧୯୯୧ରୁ ୧୯୯୪ - ଚିଲିକା ବଞ୍ଚାଅ ଆନ୍ଦୋଳନ - ଟାଟା କମ୍ପାନୀର ଚିଙ୍ଗୁଡ଼ି ଚାଷ ଅଭିଯାନ ବନ୍ଦ ।

☆ ୨୪.୧୧.୧୯୯୫ ତାରିଖରେ ଉପକୂଳବର୍ତ୍ତୀ ଅଞ୍ଚଳରେ ଚିଙ୍ଗୁଡ଼ି ଚାଷର ପ୍ରଭାବ ସମ୍ପର୍କରେ ଅନୁଧାନ ପାଇଁ ବିଧାନସଭା ଗୃହ କମିଟି ଗଠନ ।

☆ ଚିଲିକା ଭିତରେ ଓ ଏହାର କୂଳଠାରୁ ୧ କି.ମି. ମଧ୍ୟରେ ଚିଙ୍ଗୁଡ଼ି ଚାଷ କରାଯାଇ ପାରିବ ନାହିଁ ଏବଂ ଘେରି ହଟାଇବା ପାଇଁ ସୁପ୍ରିମ କୋର୍ଟଙ୍କର ନିର୍ଦ୍ଦେଶ ( ୧୧ ଡିସେମ୍ବର, ୧୯୯୬) ।

☆ ୦୬.୧୨.୧୯୯୬ ତାରିଖରେ ଚିଲିକାର ଚିଙ୍ଗୁଡ଼ି ଘେରି ହଟାଇବା ସମେତ ଏହି ହ୍ରଦର ସୁରକ୍ଷା ଓ ବିକାଶ ପାଇଁ ଏକ ବ୍ୟାପକ ଆଇନ ପ୍ରଣୟନ ପାଇଁ ବିଧାନସଭା ଗୃହ କମିଟିର ମଧ୍ୟବର୍ତ୍ତୀକାଳୀନ ରିପୋର୍ଟ ।

☆ ଅକ୍ଟୋବର ୨, ୧୯୯୬ରେ ''ଅପରେସନ୍ କ୍ଲିନ୍ ଚିଲିକା'' ଆରମ୍ଭ ଓ ୧୨ ଦିନ ପର୍ଯ୍ୟନ୍ତ ଅବ୍ୟାହତ । ଏହି ଅଭିଯାନର ନେତୃତ୍ୱ ନେଉଥିବା ପୁରୀର ତତ୍କାଳୀନ ଉପଜିଲ୍ଲାପାଳ ଶ୍ରୀ ଧର୍ମାନନ୍ଦ ଦଳେଇଙ୍କର ମାଫିଆମାନଙ୍କ ଇଙ୍ଗିତରେ ଉପମୁଖ୍ୟମନ୍ତ୍ରୀଙ୍କର ଚାପଯୋଗୁଁ ୨୪ ଘଣ୍ଟା ମଧ୍ୟରେ ବଦଳି ।

☆ ଏହି ଉଦ୍ଦେଶ୍ୟମୂଳକ ବଦଳି ବିରୁଦ୍ଧରେ ଶ୍ରୀ ଦଳାଇଙ୍କ ପକ୍ଷରୁ ଓଡ଼ିଶା ପ୍ରଶାସନିକ ଟ୍ରିବ୍ୟୁନାଲ୍‌ରେ ଆବେଦନ ।

☆ ଟ୍ରିବ୍ୟୁନାଲର ତତ୍କାଳୀନ ଅଧ୍ୟକ୍ଷ ଶରତଚନ୍ଦ୍ର ମହାପାତ୍ରଙ୍କ ରାୟ ଅସଂଗତିପୂର୍ଣ୍ଣ ବୋଲି ଅଭିଯୋଗ ଓ ଶ୍ରୀ ଦଳାଇଙ୍କ ଚବିଶଘଣ୍ଟିଆ ବଦଳି ଜଷ୍ଟିସ୍ ମହାପାତ୍ରଙ୍କ ଦ୍ୱାରା କାଏମ ।

☆ ଚିଙ୍ଗୁଡ଼ି ଚାଷ ନିଷେଧ ଓ ଘେରି ହଟାଇବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ୨୭.୦୬.୧୯୯୬ ତାରିଖରେ ଏକ ଉଚ୍ଚସ୍ତରୀୟ ସରକାରୀ କମିଟିରେ ନିଷ୍ପତ୍ତି । ନିଷ୍ପତ୍ତି ଶୀତଳ ଭଣ୍ଡାରରେ ରହିଗଲା ।

☆ ଚିଲିକାକୁ ଘେରିମୁକ୍ତ କରିବା ପାଇଁ ଓଡ଼ିଶା ହାଇକୋର୍ଟ ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏକ ଟାସ୍କ ଫୋର୍ସ ଗଠନ କରିବାପାଇଁ ତା. ୩୦.୧୦.୧୯୯୬ରିଖରେ ମାନବିକ ଅଧିକାର ସଂଗଠନ (ମାସ) ପକ୍ଷରୁ ଓଡ଼ିଶା ହାଇକୋର୍ଟରେ ଜନସ୍ୱାର୍ଥ ମାମଲା ।

☆ ଚିଲିକାରେ ଚିଙ୍ଗୁଡ଼ି ଚାଷ ନିଷେଧ ସହିତ ସମସ୍ତ ଘେରି ହଟାଇବା ପାଇଁ ୧୯୯୭ ମସିହାରେ ଉପକୂଳ ଅଞ୍ଚଳରେ ଚିଙ୍ଗୁଡ଼ି ଚାଷର ପ୍ରଭାବ ସମ୍ପର୍କରେ ଅନୁଧ୍ୟାନ କରୁଥିବା କେନ୍ଦ୍ରୀୟ ସଂସଦୀୟ କମିଟି ସହିତ ଚିଲିକା ମତ୍ସ୍ୟଜୀବୀ ମହାସଂଘ ପକ୍ଷରୁ ରାଜ୍ୟ ଅତିଥିଶାଳାରେ ସାକ୍ଷାତ ଓ ଲିଖିତ ପ୍ରତିବାଦ ।

☆ ଚିଙ୍ଗୁଡ଼ି ଚାଷ ନିଷେଧ ଓ ଘେରି ହଟାଇବା ପାଇଁ ସରକାରଙ୍କୁ ମତ୍ସ୍ୟଜୀବୀ, ପରିବେଶବିତ୍ ଏବଂ ସଚେତନ ନାଗରିକମାନଙ୍କ ପକ୍ଷରୁ ବାରମ୍ବାର ଦାବି ।

☆ ୧୯୯୮ ମସିହା ଜାନୁୟାରୀ ମାସରେ ଚିଲିକା ଓ କାଳିଜାଈ ଉଦ୍ଧାର ଅଭିଯାନ - କାଳିଜାଈଠାରେ ମତ୍ସ୍ୟଜୀବୀମାନଙ୍କର ଏକ ବିରାଟ ସମାବେଶରେ ଚିଲିକାରୁ ଚିଙ୍ଗୁଡ଼ି ଚାଷ ସମେତ ସବୁ ଘେରି ହଟାଇବା ପାଇଁ ଦୃଢ଼ ଦାବି ।

☆ ୧୯୯୭ ମାର୍ଚ୍ଚ ମାସରୁ ୧୯୯୯ ମସିହା ମାର୍ଚ୍ଚ ମଧ୍ୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ସମେତ ସ୍ଥାନୀୟ ବିଧାୟକ, ରାଜସ୍ୱ ବିଭାଗ ମନ୍ତ୍ରୀ, ରାଜସ୍ୱ ଓ ମତ୍ସ୍ୟବିଭାଗର ବହୁ ପଦାଧିକାରୀଙ୍କ ସହିତ ଚିଲିକା ମତ୍ସ୍ୟଜୀବୀ ମହାସଂଘ ପକ୍ଷରୁ ବହୁବାର ଆଲୋଚନା ।

☆ ୧୯୯୮ ମସିହା ଶେଷ ଭାଗରେ ''ମାସ୍'' ପକ୍ଷରୁ ପୂର୍ବରୁ ହୋଇଥିବା ଜନସ୍ୱାର୍ଥ ମାମଲାରେ ହାଇକୋର୍ଟଙ୍କ ରାୟ ।

☆ ଚିଙ୍ଗୁଡ଼ି ଚାଷ ବେଆଇନ କରାଯାଇ ଚିଲିକାକୁ ସମ୍ପୂର୍ଣ୍ଣ ଘେରିମୁକ୍ତ କରାଯିବା ପାଇଁ ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ ବାଲୁଗାଁ ନିକଟସ୍ଥ ଚନ୍ଦ୍ରପୁର୍‌ଠାରେ ଚିଲିକା ମତ୍ସ୍ୟଜୀବୀ ମହାସଂଘର ଚରମ ନିଷ୍ପତ୍ତି ।

☆ ୨୯.୦୩.୧୯୯୯ ତାରିଖରେ ଚିଲିକା ମତ୍ସ୍ୟଜୀବୀ ମହାସଂଘ ପକ୍ଷରୁ ୧୫.୦୪.୧୯୯୯ ମଧ୍ୟରେ ଚିଙ୍ଗୁଡ଼ି ଚାଷ ନିଷେଧ ଓ ଘେରିମୁକ୍ତ ଚିଲିକା ପାଇଁ ଫ୍ୟାକ୍ସ ଯୋଗେ ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କୁ ଏକ ଚରମ ପତ୍ର ।

☆ ସରକାର ସମ୍ପୂର୍ଣ୍ଣ ଉଦାସୀନ ।

☆ ୧୭.୦୪.୧୯୯୯ ତାରିଖରେ ବାଲୁଗାଁ ନିକଟସ୍ଥ ବରକୂଳ ଠାରେ ଚିଲିକା ଭିତରେ ମତ୍ସ୍ୟଜୀବୀମାନଙ୍କର ନୌଶିବିର ଆରମ୍ଭ । "ମତ୍ସ୍ୟଜୀବୀ ବଞ୍ଚାଅ ଆନ୍ଦୋଳନ"ର ଶୁଭାରମ୍ଭ ।

☆ ୨୪.୦୪.୧୯୯୯ ତାରିଖରେ ମତ୍ସ୍ୟଜୀବୀମାନଙ୍କ ପକ୍ଷରୁ ପ୍ରତ୍ୟକ୍ଷ ଗଣ ଅଭିଯାନ ଓ କୃଷ୍ଣପ୍ରସାଦ ଅଞ୍ଚଳରେ ୨୫୦୦ ଏକର ଚିଲିକା ଘେରିମୁକ୍ତ । ୬୭ ଜଣ ନିରୀହ ମତ୍ସ୍ୟଜୀବୀ "ଡକାୟତି" ଭଳି ଗୁରୁତର ଅଭିଯୋଗରେ ଗିରଫ ଓ ଚାରିଗୋଟି ଯନ୍ତ୍ରଚାଳିତ ଡଙ୍ଗା ପୋଲିସ୍ ଦ୍ୱାରା ଜବତ ।

☆ ୨୭.୦୪.୧୯୯୯ ତାରିଖରେ ଚନ୍ଦ୍ରପୁଟଠାରେ ଚିଲିକା ମତ୍ସ୍ୟଜୀବୀ ମହାସଂଘ ପକ୍ଷରୁ ଏହି ଗିରଫ ପ୍ରତିବାଦରେ ଜାତୀୟ ରାଜପଥ ଅବରୋଧ ।

☆ ୨୮.୦୪.୧୯୯୯ ତାରିଖରେ ଉପରଠାଉରିଆ ଭାବରେ ଖୋର୍ଦ୍ଧା ପ୍ରଶାସନ ପକ୍ଷରୁ ଘେରିଭଙ୍ଗା ଅଭିଯାନ ଆରମ୍ଭ ଓ ଶେଷ ।

☆ ନୌଶିବିର ସୋରଣ ନିକଟକୁ ସ୍ଥାନାନ୍ତରିତ ।

☆ ୧୯୯୯ ମସିହା ମେ ୫ ତାରିଖରେ ପୁରୀ ପ୍ରଶାସନ ପକ୍ଷରୁ ଘେରି ଭଙ୍ଗା ଅଭିଯାନର ଅଭିନୟ - କୃଷ୍ଣପ୍ରସାଦ ଅଞ୍ଚଳରେ ଚିଙ୍ଗୁଡ଼ି ମାଫିଆମାନଙ୍କ ପକ୍ଷରୁ ସଶସ୍ତ୍ର ପ୍ରତିରୋଧ ପ୍ରକାଶ ।

☆ ମେ ୬ ତାରିଖରେ ବେଆଇନ ଘେରି ନ ହଟାଇବା ସମ୍ପର୍କରେ ପୁରୀ ଜିଲ୍ଲାପାଳ, ଏସ୍.ପି.ଙ୍କ ସହ ଜବରଦଖଲକାରୀମାନଙ୍କର ଏକ ଲିଖିତ ଚୁକ୍ତିନାମା । ପୁରୀ ଜିଲ୍ଲା ପ୍ରଶାସନ ମାଫିଆଙ୍କ ପାଖରେ ଆତ୍ମସମର୍ପଣ କରିଛି ବୋଲି ଚିଲିକା ମତ୍ସ୍ୟଜୀବୀ ମହାସଂଘ ପକ୍ଷରୁ ଅଭିଯୋଗ ।

☆ ମେ ୨୮ ତାରିଖରେ ଚିଲିକା ମତ୍ସ୍ୟଜୀବୀ ମହାସଂଘ ପକ୍ଷରୁ ଭୁବନେଶ୍ୱର ଠାରେ ଏକ ସାମ୍ବାଦିକ ସମ୍ମିଳନୀ ଓ ୨୪ ଘଣ୍ଟା ମଧ୍ୟରେ ଘେରି ହଟାଇବା ପାଇଁ ସରକାରଙ୍କୁ ଚରମପତ୍ର ।

☆ ମେ ୨୯ ତାରିଖରେ ରାଜ୍ୟ ଯୁବ କଂଗ୍ରେସର ସଭାପତି ତଥା ଶାସକ ଦଳର ଯୁବ ବିଧାୟକ ଭୁବନେଶ୍ୱର ଠାରେ ଏକ ସାମ୍ବାଦିକ ସମ୍ମିଳନୀରେ ଉଗ୍ର ଆଞ୍ଚଳିକତାବାଦ ସୃଷ୍ଟି ସହ ମତ୍ସ୍ୟଜୀବୀ ବଞ୍ଚାଅ ଆନ୍ଦୋଳନର ନେତୃବୃନ୍ଦଙ୍କ ଉଦ୍ଦେଶ୍ୟରେ ଏକ ଧମକ ପୂର୍ଣ୍ଣ ବକ୍ତବ୍ୟ ଦେଇଥିଲେ ।

☆ ମେ ୨୯ ତାରିଖରେ ମତ୍ସ୍ୟଜୀବୀମାନଙ୍କ ପକ୍ଷରୁ ପ୍ରତ୍ୟକ୍ଷ ଗଣ ଅଭିଯାନରେ ବଉଳାବନ୍ଧ ଅଞ୍ଚଳରେ ୨୫୦୦ ଏକର ଚିଲିକା ଘେରିମୁକ୍ତ ।

☆ ମେ ୨୯ ମଧ୍ୟ ରାତ୍ରିରେ ସୋରଣର ଘୋଡ଼ାଦୌଡ଼ ପଡ଼ିଆରେ ପୋଲିସର ବର୍ବରୋଚିତ ଗଣହତ୍ୟାକାଣ୍ଡ । ଜଣେ ମହିଳା ସମେତ ତିନିଜଣ ନିରୀହ ମତ୍ସ୍ୟଜୀବୀ ମୃତ ଏବଂ ୫୦ରୁ ଉର୍ଦ୍ଧ୍ୱ ଆହତ ।

☆ କଟକ ବଡ଼ ଡାକ୍ତରଖାନାରେ ଆଉ ଜଣେ ମତ୍ସ୍ୟଜୀବୀ ସୁଦର୍ଶନ ବେହେରାଙ୍କ ମୃତ୍ୟୁ ।

☆ ଆର୍.ଡି.ସି. ତଦନ୍ତ ଓ ରିପୋର୍ଟରେ ଜିଲ୍ଲା ପ୍ରଶାସନକୁ ଦାୟୀ କରାଯିବା ।

☆ ବିଚାର ବିଭାଗୀୟ ତଦନ୍ତ ପାଇଁ ସରକାରୀ ନିଷ୍ପତ୍ତି ।

☆ ୩୧.୦୫.୧୯୯୯ ତାରିଖରେ ପୋଲିସ୍‌ର ଏହି ବର୍ବରୋଚିତ ହତ୍ୟାକାଣ୍ଡ ପ୍ରତିବାଦରେ ଘୋଡ଼ାଦୌଡ଼ ପଡ଼ିଆଠାରେ ଏକ ବିରାଟ ସମାବେଶ ଏବଂ ଜୁନ୍ ୫ରେ ''ଓଡ଼ିଶା ବନ୍ଦ'' ଆନ୍ଦୋଳନ ପାଇଁ ନିଷ୍ପତ୍ତି ।

☆ ତା. ୦୧.୦୬.୧୯୯୯ରିଖରେ ନରହତ୍ୟା ଅଭିଯୋଗରେ ଜିଲ୍ଲାପାଳ, ଏସ୍.ପି. ପ୍ରମୁଖଙ୍କୁ ଗିରଫ କରାଯାଇ ଫୌଜଦାରୀ କାର୍ଯ୍ୟାନୁଷ୍ଠାନ ପାଇଁ ଚିଲିକା ମତ୍ସ୍ୟଜୀବୀ ମହାସଂଘ ପକ୍ଷରୁ ପୋଲିସ୍ ଡି.ଜି.ଙ୍କୁ ଏକ ଫ୍ୟାକ୍ସ ବାର୍ତ୍ତା ।

☆ ଜିଲ୍ଲାପାଳ, ଏସ୍.ପି. ପ୍ରମୁଖ ଭାରତୀୟ ''ଡାୟାର୍''ମାନଙ୍କୁ ଗଣହତ୍ୟା ଅଭିଯୋଗରେ ଗିରଫ ଆଦି ଦାବି ନେଇ ଜୁନ୍ ୫ରେ ''ଓଡ଼ିଶା ବନ୍ଦ'' ।

☆ ସୋରଣର ଘୋଡ଼ାଦୌଡ଼ ପଡ଼ିଆଠାରେ ଶହୀଦ ବେଦୀ ନିର୍ମାଣ ପାଇଁ ଚିଲିକା ମତ୍ସ୍ୟଜୀବୀ ମହାସଂଘ ପକ୍ଷରୁ ଘୋଷଣା ।

☆ ୧୮.୦୬.୧୯୯୯ ତାରିଖରେ ଚିଲିକାରେ ଚିଙ୍ଗୁଡ଼ି ଚାଷକୁ ନିଷେଧ କରାଯିବା ସହିତ ଘେରି ହଟାଇବା ପାଇଁ ବିଧାନସଭା ଗୃହ କମିଟିର ସୁପାରିଶ ।

☆ ଚିଲିକାରେ ଚିଙ୍ଗୁଡ଼ି ଚାଷ ପାଇଁ ଦିଆଯାଇଥିବା ଲିଜ୍‌ର ନବୀକରଣ କରାନଯିବା ଲାଗି ସରକାରୀ ନିଷ୍ପତ୍ତି । (୨୧.୦୬.୧୯୯୯ ତାରିଖ ସମ୍ବାଦପତ୍ର ରିପୋର୍ଟ ।)

☆ ସରକାରୀ ନିଷ୍ପତ୍ତି ବିରୁଦ୍ଧରେ ଦୁଇଟି ଗ୍ରାମବାସୀଙ୍କ ମୋକଦ୍ଦମା: ହାଇକୋର୍ଟଙ୍କର ଅସ୍ଥାୟୀ ରହିତାଦେଶ ।

☆ ସରକାରଙ୍କ ପକ୍ଷରୁ ସର୍ବଦଳୀୟ ବୈଠକ-ଚିଙ୍ଗୁଡି ଚାଷ ନିଷେଧ ପାଇଁ ଆଇନକରିବା ଲାଗି ସହମତି । (୩୦.୬.୧୯୯୯)

☆ ଚିଙ୍ଗୁଡି ଘେରି ଭଂଗା ପ୍ରତିବାଦରେ ହାଇକୋର୍ଟରେ ଅନ୍ୟ କେତେଗୁଡିଏ ମୋକଦ୍ଦମା : ସୁପ୍ରିମକୋର୍ଟ ଆଦେଶ ଦୃଷ୍ଟିରୁ ଚିଙ୍ଗୁଡି ଚାଷ ବେଆଇନ, ଘେରି ଭଙ୍ଗା ଯାଇପାରିବ ବୋଲି ହାଇକୋର୍ଟଙ୍କ ନିର୍ଦ୍ଦେଶ (୧.୭.୯୯) ।

☆ ବିଧାନସଭା ଘେରାଉ, ମତ୍ସ୍ୟଜୀବୀମାନଙ୍କର ବିରାଟ ବିକ୍ଷୋଭ, ମୁଖ୍ୟମନ୍ତ୍ରୀଙ୍କୁ ସ୍ମାରକପତ୍ର (୨.୭.୧୯୯୯) ।

(ଏହି ପୁସ୍ତିକା ପ୍ରକାଶନ ପର୍ଯ୍ୟନ୍ତ)

## ମତ୍ସ୍ୟଜୀବୀ ବଞ୍ଚାଅ ଆନ୍ଦୋଳନ-ଏକ ସାମଗ୍ରିକ ଦୃଷ୍ଟିରେ ..........

ରାଜନୈତିକ ଓ ଅମଲାତାନ୍ତ୍ରିକ ପୃଷ୍ଠପୋଷକତାରେ ଚିଲିକାରେ ଚାଲିଥିବା ମାଫିଆରାଜର ଅଭିବୃଦ୍ଧି ଏବଂ ଆନ୍ଦୋଳନକାରୀ ମତ୍ସ୍ୟଜୀବୀମାନଙ୍କ ଉପରେ ମାଫିଆ ଇଙ୍ଗିତରେ ପୋଲିସ୍‌ର ଓ ପୋଲିସ୍ ସୁରକ୍ଷା ବଳୟ ଭିତରେ ମାଫିଆମାନଙ୍କର ଗୁଳି ଚାଳନା ଆମ ଘୁଣଖିଆ ଗଣତାନ୍ତ୍ରିକ ବ୍ୟବସ୍ଥାର ଅନ୍ତର୍ନିହିତ ବିକୃତିର ଆଉ ଏକ ନଗ୍ନ ନମୁନା । ଆମର ତଥାକଥିତ ଗଣତାନ୍ତ୍ରିକ ବ୍ୟବସ୍ଥା କେତେ ଦେବାଳିଆ, କେତେ ଅଥର୍ବ, ଏହି ବ୍ୟବସ୍ଥା ପ୍ରକୃତରେ କାହା ସ୍ୱାର୍ଥରେ ଓ କାହା ଇଙ୍ଗିତରେ ପରିଚାଳିତ ଏବଂ ଏଥିରେ ''ଗଣ'' ବା ସାଧାରଣ ଜନତା ପ୍ରକୃତରେ କେତେ ଅସହାୟ, ଚିଲିକାର ସାମଗ୍ରିକ ଘଟଣା ଆଉ ଥରେ ତା'ର ପରଦାଫାଡ଼ କରିଛି । ମାଫିଆମାନେ ଏ ବ୍ୟବସ୍ଥାର ପ୍ରତ୍ୟେକ ଗଣ୍ଠି ମୁଣ୍ଡରେ ଗଣ୍ଠିବାତ ଭଳି ଆସ୍ଥାନ ଜମେଇ ବସିଛନ୍ତି । ଚିଲିକା ଘଟଣାରେ ହୁଏତ ସେମାନଙ୍କର ହିଂସ୍ର ମୁହଁଟା ଟିକେ ଖାଲି ଅଧିକ ଫୁଟି ବାହାରୁଛି ।

ହୁଏତ ବିଚାରାଳୟଠାରୁ ବିଧାନ ସଭାଯାଏଁ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ସମସ୍ତ ଦ୍ୱାରକୁ ମାଫିଆମାନେ କେମିତି ମାଡ଼ିବସି ପାରନ୍ତି ଏବଂ ସେମାନଙ୍କ ମାରପେଞ୍ଚ ପ୍ରତି ଏହିସବୁ ଗଣତାନ୍ତ୍ରିକ ଅନୁଷ୍ଠାନମାନେ କେତେ ଅଥର୍ବ ଓ ଉଦାସୀନ, ଚିଲିକା ଘଟଣାରେ ପୁଣି ଥରେ ତାର ସ୍ପଷ୍ଟ ପ୍ରମାଣ ମିଳିଛି । ଚିଲିକାର ସମସ୍ତ ଘଟଣା ସାମଗ୍ରିକ ଭାବରେ ଆଉ ଏକ ପ୍ରଶ୍ନ ଉତ୍‌ଥାପନ କରୁଛି ଯେ, ପ୍ରଚଳିତ ବ୍ୟବସ୍ଥାରେ ସାଧାରଣ ଜନତା ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଉପାୟରେ ଯଦି ତାର ନ୍ୟାଯ୍ୟ ଦାବୀ ହାସଲ କରି ନପାରେ, ପ୍ରଚଳିତ ଶାସନ ବ୍ୟବସ୍ଥା ଓ ଆଇନ୍ ଯଦି କେତେକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ସ୍ୱାର୍ଥରକ୍ଷା ପାଇଁ ପରିଚାଳିତ ହୁଏ, ଆଇନ୍‌କୁ କାର୍ଯ୍ୟକାରୀ କରିବାକୁ ଯାଇ ଆଇନ୍‌ଭଙ୍ଗକାରୀମାନଙ୍କ ଇଙ୍ଗିତରେ ସେମାନଙ୍କୁ ଯଦି ଗୁଳିଖାଇବାକୁ ପଡେ, ତେବେ ସାଧାରଣ ଜନତା କାହିଁକି ବିଦ୍ରୋହ ନକରିବ ଓ ହିଂସ୍ର ନହେବ ? ପ୍ରଚଳିତ ସମାଜ ବ୍ୟବସ୍ଥାରେ ତାହାହିଁ ଦିନକୁ ଦିନ ଅଧିକ ସ୍ପଷ୍ଟ ହୋଇ ଉଠୁଛି ।

ଅତୀତରେ ବାହାରୁ ଯାଇ ଅନେକ ବ୍ୟକ୍ତି ବିଭିନ୍ନ ନାମରେ ଚିଲିକାରେ ଆନ୍ଦୋଳନମାନ ଆରମ୍ଭ କରିଛନ୍ତି । ଜୀବନ ଜୀବିକା ହରେଇଥିବା ସାଧାରଣ ମତ୍ସ୍ୟଜୀବୀମାନଙ୍କୁ ସେଥିରେ କେତେଦୂର ସମ୍ପୃକ୍ତ କରାଯାଇଥିଲା ତାହା ସନ୍ଦେହଜନକ । ବରଂ କେତେକ ନେତା ବାହାରୁ ଆମଦାନୀ ହୋଇଯାଇ ମତ୍ସ୍ୟଜୀବୀମାନଙ୍କ ଉପରେ ନିଜକୁ ଲଦିଦେଇ ମତ୍ସ୍ୟଜୀବୀମାନଙ୍କ ସମସ୍ତ ଆତ୍ମବିଶ୍ୱାସକୁ ନଷ୍ଟ କରିଦେବାରେ ସାହାଯ୍ୟ କରିଛନ୍ତି ଏବଂ ଏପଟେ ଚିଲିକା ଆନ୍ଦୋଳନ ନାମରେ ସମ୍ବାଦପତ୍ରମାନଙ୍କରେ ହୁଏତ ନିଜର ପତିଆରା, ନିଜର କାଟ୍‌ତି ବଢ଼େଇଛନ୍ତି । ଏଥର କିନ୍ତୁ ମତ୍ସ୍ୟଜୀବୀମାନେ ନିଜସ୍ୱ ନେତୃତ୍ୱରେ ସଂଗଠିତ ହୋଇଛନ୍ତି, ନିଜର ଜୀବନ ଜୀବିକା ପାଇଁ ରକ୍ତ ଦେଇ, ପ୍ରାଣ ଦେଇ, ଶହୀଦ ହୋଇ ନିଜର ଅଧିକାର ସାବ୍ୟସ୍ତ କରିବାକୁ ଅଣ୍ଟାଭିଡ଼ି ବାହାରିଛନ୍ତି । ହାଇକୋର୍ଟ/ ସୁପ୍ରିମ୍ କୋର୍ଟଙ୍କର ରାୟ, ବିଧାନ ସଭା କମିଟିର ସୁପାରିଶ, ଚିଲିକାର ମତ୍ସ୍ୟଜୀବୀମାନଙ୍କର ଭାଗ୍ୟ ବଦଳେଇ ଦେବ ବୋଲି ସେମାନେ ଖୁବ୍ ଆଶାବାନ୍ଧି, କାତ ଭିଡ଼ି ବସିଥିଲେ । ଶେଷରେ "ଆକାଶ କଇଁଆ, ଚିଲିକା ମାଛ" ଭଳି ସବୁକିଛି କେମିତି ଫସରଫାଟି ଗଲା ତାହା ମତ୍ସ୍ୟଜୀବୀମାନେ ଅଙ୍ଗେ ନିଭେଇଲେ । କୋର୍ଟ କଚେରୀ କିମ୍ବା ବାହାରୁ ଆମଦାନୀ କରା ନେତା କେହି ସେମାନଙ୍କ ଭାଗ୍ୟ ବଦଳେଇ ପାରି ନାହାନ୍ତି କି ପାରିବେ ନାହିଁ ମଧ୍ୟ । ଏଥର ସେମାନେ ନିଜେ ନିଜର ଭାଗ୍ୟ ନିୟନ୍ତା ହେବାର ସମୟ ଆସିଛି । ଏଥର ସେମାନଙ୍କୁ ନିଜ ନାଆର ନିଜେ ନାଉରୀ ହେବାକୁ ହେବ, ନିଜେ କାତ ଧରି ବସିବାକୁ ପଡ଼ିବ । ସେମାନଙ୍କ ପାଇଁ ଯିଏ ଯେତେ ବାହାସ୍ଫୋଟ ମାରିଲେ ବି, ଯିଏ ଯେତେ ନିଜର ବୋଲି ଦେଖାଇ ହେଲେ ବି ଶେଷରେ ମତ୍ସ୍ୟଜୀବୀମାନଙ୍କୁ ନିଜେହିଁ ବିଲେଇ ବେକରେ ଘଣ୍ଟି ବାନ୍ଧିବାକୁ ପଡ଼ିବ । ସମ୍ବିଧାନ ପ୍ରଦତ୍ତ ସେମାନଙ୍କ ମୌଳିକ ଅଧିକାର (ଜୀବନ ଜୀବିକାର ଅଧିକାର ଧାରା - ୨୧) ଏବଂ ମୌଳିକ କର୍ତ୍ତବ୍ୟ (ପରିବେଶ ସୁରକ୍ଷା କରିବାର ମୌଳିକ କର୍ତ୍ତବ୍ୟ ଧାରା ୫୧ (କ)) ପାଳନ କରୁଥିବା ମତ୍ସ୍ୟଜୀବୀମାନଙ୍କୁ ଆଇନ୍‌ଭଙ୍ଗକାରୀର ଆଖ୍ୟା ଦିଆଯାଇ ସେମାନଙ୍କ ଉପରେ ପ୍ରଶାସନ ତରଫରୁ ପ୍ରଭାବଶାଳୀ ଗୋଷ୍ଠୀର ଇଙ୍ଗିତରେ ଗୁଳିଚାଳନା କରି ମୃତାହତ କରାଗଲା । ନିଜ ଜୀବନ ଜୀବିକାର ଅଧିକାର ପାଇଁ ଲଢ଼େଇ କରୁଥିବା ସାଧାରଣ ମଣିଷମାନଙ୍କ ମଧ୍ୟରୁ କେତେଙ୍କୁ ଏମିତି ଯୁଗେ ଯୁଗେ ଶହୀଦ୍ ହେବାକୁ ହୋଇଛି । କିନ୍ତୁ ଶେଷରେ ସେମାନଙ୍କ ସଂଗଠିତ ସଂଗ୍ରାମ ପାଖରେ ଯୁଗେ ଯୁଗେ ଶାସନକଳ ମୁଣ୍ଡ ନୁଆଁଇଛି । ଚିଲିକାର ମତ୍ସ୍ୟଜୀବୀମାନେ ଇତିହାସର ଏହି ଚିରାଚରିତ ଧାରାକୁ ବୁଝି, ସେମାନଙ୍କ ଉପରେ ଏଇ ବର୍ବରୋଚିତ ଆକ୍ରମଣରେ ଭାଙ୍ଗି ନପଡ଼ି ବରଂ ଅଧିକ ସଙ୍କଳ୍ପବଦ୍ଧ ଏବଂ ସୁସଂଗଠିତ ଭାବରେ ସେମାନଙ୍କ ସଂଗ୍ରାମକୁ ଜାରି ରଖି ଆଇନ୍‌କୁ ପ୍ରକୃତ ରୂପେ କାର୍ଯ୍ୟକାରୀ କରିବାର ଆହ୍ୱାନକୁ ଗ୍ରହଣ କରିବା ଆଶା କରାଯାଏ । ଏ କ୍ଷେତ୍ରରେ ସେମାନଙ୍କୁ ସାରା ରାଜ୍ୟର ଜନସାଧାରଣ, ବୁଦ୍ଧିଜୀବୀ, ଗଣମାଧ୍ୟମମାନଙ୍କର ଅକୁଣ୍ଠ ସମର୍ଥନ, ସଂହତି ଏବଂ ସମବେଦନା ମିଳିଛି, ମିଳୁଥିବ ମଧ୍ୟ ।

ଚିଲିକାର ମତ୍ସ୍ୟଜୀବୀମାନଙ୍କୁ ଆଉ ଗୋଟିଏ ବିଷୟରେ ବରଂ ଅଧିକ ସତର୍କ ହେବାକୁ ହେବ । କେଉଁମାନେ ସେମାନଙ୍କ ଶତ୍ରୁପକ୍ଷ ସେମାନଙ୍କୁ ହୁଏତ ମତ୍ସ୍ୟଜୀବୀମାନେ ଚିହ୍ନି ପାରିଛନ୍ତି । ସେମାନଙ୍କ ବିରୋଧରେ ମତ୍ସ୍ୟଜୀବୀମାନେ ହୁଏତ ସେମାନଙ୍କର ସଂଗ୍ରାମର ଧାରାକୁ ସ୍ଥିର କରିବାରେ ନିଶ୍ଚିତ ହୋଇପାରିବେ । ଏବେ କିନ୍ତୁ ମିତ୍ରର ମୁଖା ପିନ୍ଧି ସେମାନଙ୍କ ପାଇଁ କୁମ୍ଭୀର କାନ୍ଦଣା କାନ୍ଦୁଥିବା ଅନେକଙ୍କର ପ୍ରକୃତ ସ୍ୱରୂପକୁ ମତ୍ସ୍ୟଜୀବୀମାନଙ୍କୁ ବରଂ ଅଧିକ ସତର୍କତାର ସହିତ ଚିହ୍ନିବାକୁ ହେବ । ମତ୍ସ୍ୟଜୀବୀମାନଙ୍କର ଆନ୍ଦୋଳନକୁ ଭଣ୍ଡୁର କରିବାକୁ ଚିହ୍ନା ଶତ୍ରୁମାନଙ୍କଠାରୁ ଏହି ଅଚିହ୍ନା ମିତ୍ରମାନେ ବରଂ ଅଧିକ ଶକ୍ତିଶାଳୀ ଏବଂ ବିପଜ୍ଜନକ । ମତ୍ସ୍ୟଜୀବୀମାନଙ୍କୁ ପୁଞ୍ଜିକରି ଆଗରୁ ଅନେକ ନେତା ନିଜର କାଟ୍ତି ବଢ଼େଇଥିବାର ନଜିର ଅଛି । ସୋରଣ ଗାଁରେ ଶହୀଦ ହୋଇଥିବା ମତ୍ସ୍ୟଜୀବୀମାନଙ୍କ ଶବ ଉପରେ ଛିଡ଼ାହୋଇ, ଚିଲିକା ପାଣିରେ ବୋହି ଯାଇଥିବା ସେମାନଙ୍କ ରକ୍ତକୁ ମୂଳଧନ କରି ଏବେ ବହୁ ରାଜନୈତିକ ଦଳ, ତଥାକଥିତ ସ୍ୱେଚ୍ଛାସେବୀ ସଂଗଠନ ଓ ସୌଖୀନ ସମାଜସେବୀମାନେ ନିଜ ବେପାର ବଢ଼େଇବାକୁ ଲାଗେଇଲେଣି । ଏବେ ତ ସୋରଣ ଗାଁକୁ ସେମାନଙ୍କ ସୁଅ ଛୁଟିଛି । ଆଗାମୀ ନିର୍ବାଚନ ବଜାର ସରଗରମ କରିବାକୁ ଚିଲିକା ମତ୍ସ୍ୟଜୀବୀଙ୍କ ତାଜା ରକ୍ତ ସେମାନଙ୍କ ପାଇଁ ଖୁବ୍ ଦାମୀ ପଣ୍ୟଦ୍ରବ୍ୟର କାମ ଦେବ ।ରଙ୍ଗବେରଙ୍ଗୀ ବ୍ୟାନର ଧରି ବୁଲୁଥିବା ତଥାକଥିତ ଟହଲିଆ ସ୍ୱେଚ୍ଛାସେବୀ ସଂଗଠନମାନେତ ସୋରଣ ଗାଁରେ ''ଟହଲ'' ମାରିବା ଆରମ୍ଭ କଲେଣି । କୁମ୍ଭୀର କାନ୍ଦଣା କାନ୍ଦୁଥିବା ମତ୍ସ୍ୟଜୀବୀମାନଙ୍କର ଏହି ''ଦରଦୀ ବନ୍ଧୁ''ମାନେ ଆଗରୁ ଶୋଇଥିଲେ କୋଉଠି ? ଚିଲିକାରେ ମାଫିଆ ଦୌରାତ୍ମ୍ୟକୁ ନେଇ ହଇଚଇ ସୃଷ୍ଟି ହେଉଥିବା ବେଳେ ତ ଏମାନଙ୍କ ତୁଣ୍ଡ ଫିଟିବାର କେହି କେବେ ଶୁଣିନାହିଁ ? ବିଡ଼ମ୍ବନାର ବିଷୟ ଯେଉଁ ବାମପନ୍ଥୀ ଦଳମାନେ କେନ୍ଦ୍ର ସରକାରରେ ସହଯୋଗୀ ଥିବାବେଳେ, ପୁଣି କୃଷିମନ୍ତ୍ରୀ ପଦମଣ୍ଡନ କରୁଥିବା ବେଳେ ଚିଙ୍ଗୁଡ଼ି ଚାଷକୁ ନେଇ ସୁପ୍ରିମ୍ କୋର୍ଟଙ୍କ ରାୟ ବିରୋଧରେ ସରକାରଙ୍କ ତରଫରୁ ରିଭିଉ ପିଟିସନ୍ ଦାଖଲ କରେଇଥିଲେ, ସୁପ୍ରିମ୍ କୋର୍ଟ ରାୟକୁ ଅକାମୀ କରିବା ଉଦ୍ଦେଶ୍ୟରେ ''ଆକ୍ୱାକଲ୍‌ଚର୍ ଅଥରିଟି ବିଲ୍'' ଅଣେଇଥିଲେ, ଚିଙ୍ଗୁଡ଼ି ମାଫିଆମାନଙ୍କଠାରୁ ପଇସା ନେଇ ଷ୍ଟାର ହୋଟେଲ୍‌ରେ ମିଟିଂ କରି ଚିଙ୍ଗୁଡ଼ି ଚାଷ ସପକ୍ଷରେ ସମର୍ଥନ ସୃଷ୍ଟି କରିବାକୁ ଚେଷ୍ଟା କରୁଥିଲେ, ପୁଣି ଯେଉଁ ଦଳ କ୍ଷମତାରେ ଥାଇ ମାରାତ୍ମକ ଚିଲିକା ଲିଜ୍ ନୀତି ପ୍ରଣୟନ କରେଇଥିଲେ, ସେମାନେ ଆଜି ମତ୍ସ୍ୟଜୀବୀଙ୍କ ପାଇଁ ଲୁହ ଗଡ଼ଉଛନ୍ତି । ସେ ଲୁହରେ ବିଷ କେତେ, ବେଦନା କେତେ ? ଏଇ ରାଜନୈତିକ ନେତାମାନେ କଣ ଏଡ଼େ ସୁଧାର, ଅଗୁଆଁର ? ଖାଲି ଏବେ ସେମାନଙ୍କ ଦୃଷ୍ଟି ଚିଲିକା ଆଡ଼କୁ ଫେରିଲା ? ଏଇ ଖଣ୍ଡମାନଙ୍କ ଭଣ୍ଡ ଉଦ୍ୟମକୁ ପଣ୍ଡ କରିବା, ଏମାନଙ୍କ ମିଠା କଥାରେ ଭାବବିହ୍ୱଳିତ ହୋଇ ସେମାନଙ୍କ ଉପରେ ଭରସା କରି ନିଜ କର୍ତ୍ତବ୍ୟ ଭୁଲି ନଯିବା, ମତ୍ସ୍ୟଜୀବୀଙ୍କ ପାଇଁ ଆଉ ଏକ ଆହ୍ୱାନ ।

ସର୍ବୋପରି ନିଜର ଆତ୍ମବିଶ୍ୱାସ ବଜାୟ ରଖି ନିଜ ଭାର ନିଜ କାନ୍ଧରେ ବୋହି ଶିଖିବା ହିଁ ଚିଲିକାର ମତ୍ସ୍ୟଜୀବୀମାନଙ୍କ ପାଇଁ ସର୍ବପ୍ରଧାନ ଆହ୍ୱାନ । ଏଥର ଯେମିତି ସେମାନଙ୍କର ଆନ୍ଦୋଳନ ବାହାରର ଶୁଭେଚ୍ଛୁ, ଗଣ ସଂଗଠନ, ବୁଦ୍ଧିଜୀବୀ ଖବରକାଗଜମାନଙ୍କର ମହାତ୍ମ୍ୟ ଉପରେ ଅତ୍ୟନ୍ତ ନିର୍ଭରଶୀଳ ରହି ପୂର୍ବ ଆନ୍ଦୋଳନମାନଙ୍କ ପରି ପରାଙ୍ଗପୁଷ୍ଟ ହୋଇ ଫସରଫାଟି ନଯାଏ । ପୁଣି ଆଜିକାଲିର ଖବରକାଗଜିଆ ହାୱାରେ ଭାସିଯାଇ ମତ୍ସ୍ୟଜୀବୀମାନେ ସେମାନଙ୍କ ଆନ୍ଦୋଳନକୁ ଯେମିତି ଏକ ଧୂଆଁବାଣରେ ପରିଣତ କରିନଦିଅନ୍ତି । ଏଥିପ୍ରତି ସଜାଗ ହେବା ମତ୍ସ୍ୟଜୀବୀମାନଙ୍କର ଯେତିକି ଦାୟିତ୍ୱ, ସେମାନଙ୍କର ସ୍ୱାର୍ଥପ୍ରତି ପ୍ରକୃତ ଅର୍ଥରେ ସମ୍ବେଦନଶୀଳ ପ୍ରତ୍ୟେକ ସଙ୍ଗଠନ ଏବଂ ବ୍ୟକ୍ତିବିଶେଷଙ୍କର ବରଂ ଅଧିକ ସତର୍କତା ଏବଂ ଦାୟିତ୍ୱ ରହିବା ଉଚିତ ।

ଅଶିକ୍ଷିତ, ନିରକ୍ଷର ମତ୍ସ୍ୟଜୀବୀମାନଙ୍କ ମଧ୍ୟରେ ଥିବା କିଛି କିଛି ଅନ୍ତର୍ବିବାଦ ଏବଂ ସାଙ୍ଗଠନିକ ଦୁର୍ବଳତା ହିଁ ମତ୍ସ୍ୟଜୀବୀମାନଙ୍କ ଆନ୍ଦୋଳନର ପ୍ରଧାନ ଅନ୍ତରାୟ । ମତ୍ସ୍ୟଜୀବୀମାନେ ଏ ପ୍ରତି ଦୃଷ୍ଟିଦେବା ସର୍ବାଦୌ ଆବଶ୍ୟକ ଏବଂ ଆଗାମୀ ଦିନରେ ଆସୁଥିବା ବୃହତ୍ତର ଏବଂ ଶକ୍ତିଶାଳୀ ଆନ୍ଦୋଳନର ଆହ୍ୱାନକୁ ମୁକାବିଲା କରିବା ପାଇଁ ମତ୍ସ୍ୟଜୀବୀମାନେ ସେମାନଙ୍କର ସାଙ୍ଗଠନିକ ଶକ୍ତିକୁ ସୁଦୃଢ଼ କରିବାକୁ ଉଦ୍ୟମ କରିବେ ବୋଲି ଆଶା ।

ମତ୍ସ୍ୟଜୀବୀମାନଙ୍କର ଏହି ପର୍ଯ୍ୟାୟର ଆନ୍ଦୋଳନକୁ ନେଇ ଯେଉଁ ହଇଚଇ ଏବଂ ରକ୍ତପାତ, ହୁଏତ ତା'ଦ୍ୱାରା ଚିଲିକାରୁ ମାଫିଆରାଜ ସାମୟିକ ଭାବରେ ହଟି ଯାଇପାରେ, କିନ୍ତୁ ତା'ଦ୍ୱାରା ମତ୍ସ୍ୟଜୀବୀମାନଙ୍କର ସବୁଦିନ ପାଇଁ ସବୁ ସମସ୍ୟାର ସମାଧାନ ହୋଇଯିବ ବୋଲି ଭାବି ବସିବାର କୌଣସି କାରଣ ନାହିଁ । ଚିଲିକା ସୁନାଅଣ୍ଡା ଦିଆ କୁକୁଡ଼ା । ଥରେ ତା' ଦେହରୁ ମୁନାଫାର ମଜା ଚାଖିଥିବା ମାଫିଆ ଏବଂ ସରକାରଙ୍କ ଲୋଲୁପ ଦୃଷ୍ଟି ତା' ଉପରେ ରହିବା ସ୍ୱାଭାବିକ । ତେଣୁ ମତ୍ସ୍ୟଜୀବୀ ମାନଙ୍କର, କେବଳ ଚିଲିକା ଉପରେ ଅଧିକାରକୁ ନେଇ ନୁହେଁ, ବରଂ ସାଧାରଣ ମଣିଷ ଭଳି ବଞ୍ଚିବାର ଅଧିକାର କ୍ଷୁର୍ଣ୍ଣହେବା ଉପରେ ସବୁଦିନେ ବିପଦର ଆଶଙ୍କା ଅବଶ୍ୟ ରହିବ । ସେ ଦୃଷ୍ଟିରୁ ଆଗାମୀ ଦିନରେ ସେସବୁର ମୁକାବିଲା ପାଇଁ ନିଜର ସାଂଗଠନିକ ଶକ୍ତିକୁ ସୁଦୃଢ଼ କରି ମତ୍ସ୍ୟଜୀବୀମାନେ ଏହି ଆନ୍ଦୋଳନ ପ୍ରକ୍ରିୟାକୁ ଜାରି ରଖିବା ଉଚିତ । ନଚେତ୍, ତାତ୍କାଳିକ ସମସ୍ୟାର ସାମୟିକ ସମାଧାନ ପରେ ବାଲ୍‌କୋ, ବାଲିଆପାଳ, ଗୋପାଳପୁର କି ଅନ୍ୟାନ୍ୟ ଯେ କୌଣସି ସ୍ଥାନର ଗଣ ଆନ୍ଦୋଳନର ପ୍ରଭାବ ଯେପରି ବ୍ୟାପକ ଓ ସୁଦୂରପ୍ରସାରୀ ହୋଇପାରିନାହିଁ, ଚିଲିକା କ୍ଷେତ୍ରରେ ମଧ ପରିଣତି ସେହିପରି ହେବାର ସମ୍ଭାବନା ଅଛି ।

## ଶହୀଦମାନଙ୍କ ରକ୍ତ ବ୍ୟର୍ଥ ନଯାଉ .........

ମତ୍ସ୍ୟଜୀବୀ ଭାଇମାନଙ୍କ ସାମୂହିକ ସ୍ୱାର୍ଥ ଓ ଅଧିକାରର ସୁରକ୍ଷା ପାଇଁ ସେମାନଙ୍କ ମଧ୍ୟରୁ ବାଞ୍ଛା, ଦିଗମ୍ବର, ସୁଦର୍ଶନ ଓ ପ୍ରେମୀ ଲଢ଼େଇ କରି ପୋଲିସ୍ ଗୁଳିରେ ନିଜର ଯେଉଁ ରକ୍ତ ବୁହେଇ ଶହୀଦ ହୋଇଗଲେ, ସେହି ଶହୀଦ ରକ୍ତର ଉପଯୁକ୍ତ ମର୍ଯ୍ୟାଦା ବଜାୟ ରଖି ଆନ୍ଦୋଳନକୁ ଆଗକୁ ଆଗକୁ ବଢ଼େଇ ନେବା ମତ୍ସ୍ୟଜୀବୀମାନଙ୍କ ପାଇଁ ଏବେ ସର୍ବଶ୍ରେଷ୍ଠ ଇଜ୍ଜତର ପ୍ରଶ୍ନ ।



## ନୀତିଗତ ଘୋଷଣା :

ମାନବିକ ଅଧିକାର ସଙ୍ଗଠନ ନୀତିଗତ ଭାବରେ ଦେଶୀ ବା ବିଦେଶୀ, କୌଣସି ଆନୁଷ୍ଠାନିକ ଅନୁଦାନ ଗ୍ରହଣ କରିବାକୁ ବିରୋଧ କରେ । ଏହାର ଆଦର୍ଶ ଏବଂ ଉଦ୍ଦେଶ୍ୟ ପ୍ରତି ସମ୍ବେଦନଶୀଳ ବ୍ୟକ୍ତିଙ୍କ ଅନୁଦାନ ଏବଂ ସହାୟତାରେ ଏହା ପରିଚାଳିତ ହୁଏ ।

**ପ୍ରଚ୍ଛଦ :**

ସୌଜନ୍ୟ "ସମାଜ"

(୩.୬.୧୯୯୯)

ଚିଲିକା ମତ୍ସ୍ୟଜୀବୀମାନଙ୍କ ଆନ୍ଦୋଳନ ସମର୍ଥନରେ ସାଧାରଣ ସମ୍ପାଦକ, ମାନବିକ ଅଧିକାର ସଙ୍ଗଠନ (ମାସ), ୨୧୨୩, ଶବର ସାହି ଲେନ୍, ଭୁବନେଶ୍ୱର-୬ ଙ୍କ ଦ୍ୱାରା ପ୍ରକାଶିତ ।
ମୁଦ୍ରଣ : ଆର୍ଟେକ୍, ଦି କମ୍ପ୍ୟୁଟର ଡିଜାଇନର୍, ଭୁବନେଶ୍ୱର

ଜୁଲାଇ-୯୯ ସହଯୋଗ : ୬ ଟଙ୍କା ମାତ୍ର